# 'ହିନ୍ଦୁ'

## ରାଜ୍ୟରେ

# ହିନ୍ଦୁତ୍ୱ

ଓଡ଼ିଶାରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଆଦିକାଳ

ପ୍ରଳୟ କାନୁନ୍‌ଗୋ

ସମାର୍ଜନୀ
ଭୁବନେଶ୍ୱର
ଫେବୃଆରୀ- ୨୦୦୪

# ପ୍ରକାଶକୀୟ

ଗତ ଶତାବ୍ଦୀର ନବେ ଦଶକରେ ଦେଶରେ ନବ୍ୟ-ଉଦାରବାଦୀ ଅର୍ଥନୈତିକ ବ୍ୟବସ୍ଥା ପ୍ରଚଳିତ ହେବା ପରେ ପ୍ରତିବାଦୀ କଂଠର ଦୁର୍ବଳତାର ସୁଯୋଗ ନେଇ ଓଡ଼ିଶାକୁ ସେହି ଅର୍ଥନୀତିର ପ୍ରୟୋଗଶାଳା ଭାବେ ବ୍ୟବହାର କରାଯାଇଥିଲା, ଯାହା ଏପର୍ଯ୍ୟନ୍ତ ଅବ୍ୟାହତ । ଓଡ଼ିଶାରେ ଏହି ଅର୍ଥନୈତିକ ନୀତିର ପ୍ରଚଳନ ଫଳରେ ଜନଜୀବନରେ ବଂଚନା, ବୈଷମ୍ୟ ଏବଂ ଅତ୍ୟାଚାର କିପରି ତ୍ୱରାନ୍ୱିତ ହୋଇଛି, ତାହା ଏକ ଜୀବନ୍ତ ଅଭିଜ୍ଞତା ଏବଂ କୌଣସି ବ୍ୟାଖ୍ୟାର ଅପେକ୍ଷା ରଖେ ନାହିଁ । ଏହି ଶୋଷଣ ଓ ଅବଦମନ ବିରୋଧରେ ପ୍ରତିବାଦର କିନ୍ତୁ ଅଙ୍କୁରଣ ହୋଇଛି ଏବଂ ଅତ୍ୟାଚାରୀ ଶାସକ ଗୋଷ୍ଠୀକୁ ଆଜି ପ୍ରତିବାଦର ସ୍ୱର ଶୁଣିବାକୁ ହେଉଛି । ଏ ପରିପ୍ରେକ୍ଷୀରେ ହିନ୍ଦୁତ୍ୱର ପ୍ରବକ୍ତାମାନଙ୍କର ଗୁଜରାଟ ପରେ ଓଡ଼ିଶାକୁ ହିନ୍ଦୁତ୍ୱର ପ୍ରୟୋଗଶାଳାରେ ପରିଣତ କରିବାର ଘୋଷିତ ଆସ୍ଫାଳନ ଓଡ଼ିଶାର ଜନସାଧାରଣଙ୍କ ପାଇଁ ଏକ ଆହ୍ୱାନ । ଉଗ୍ର 'ହିନ୍ଦୁତ୍ୱ' ଭଳି ଫାସିବାଦୀ ଓ ଏକଛତ୍ରବାଦୀ ଚିନ୍ତାଧାରା ଯେ ଜନସାଧାରଣଙ୍କୁ ବିଭ୍ରାନ୍ତ କରି, ଜୀବନ ଜୀବିକାର ମୂଳ ସମସ୍ୟାଗୁଡ଼ିକରୁ ସେମାନଙ୍କର ଦୃଷ୍ଟି ଅପସାରଣ କରି ଏକ କୃତ୍ରିମ ଉଦ୍‌ଭାବିତ ଶତ୍ରୁ ବିପକ୍ଷରେ ପରିଚାଳିତ କରେ, ତାହା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ଜଣା ।

ସେଥିପାଇଁ ଭାରତରେ ଏବଂ ବିଶେଷକରି ଓଡ଼ିଶାରେ ହିନ୍ଦୁତ୍ୱ ଏବଂ ଏହାର ପ୍ରବକ୍ତାମାନଙ୍କର ସୁଦୂରପ୍ରସାରୀ ଯୋଜନାକୁ ପ୍ରତିହତ କରିବା ଆଜି ସମୟର ଆହ୍ୱାନ । ତେବେ ପ୍ରତିହତ କରିବାକୁ ହେଲେ ଓଡ଼ିଶାର ବିଶେଷ ସାମାଜିକ, ରାଜନୈତିକ, ସାଂସ୍କୃତିକ ପରିବେଶ ଏବଂ ଏହି ପରିବେଶରେ ହିନ୍ଦୁତ୍ୱର ପ୍ରସାର ପାଇଁ ତା'ର ପ୍ରବକ୍ତାମାନେ ଗ୍ରହଣ କରୁଥିବା ବିଶେଷ ରଣକୌଶଳକୁ ବିଶଦ ଭାବେ ବୁଝିବାକୁ ହେବ । ଏହି ଦୃଷ୍ଟିକୋଣରୁ 'ଇକୋନୋମିକ୍ ଆଣ୍ଡ୍ ପଲିଟିକାଲ୍ ୱିକ୍‌ଲି' (ଅଗଷ୍ଟ,୨ , ୨୦୦୩)ରେ ପ୍ରକାଶିତ ପ୍ରଳୟ କାନୁନ୍‌ଗୋଙ୍କର ପ୍ରବନ୍ଧ Hindutva's Entry into a 'Hindu Province': Early Years of RSS in Orissaର ଓଡ଼ିଆ ଭାଷାନ୍ତର କରିବାକୁ ଆମେ ଚେଷ୍ଟା କରିଛୁ ।

ଓଡ଼ିଶାର ବିଶେଷ ଭୌଗୋଳିକ, ସାମାଜିକ, ରାଜନୈତିକ, ସାଂସ୍କୃତିକ ପଟ୍ଟଭୂମିରେ ପ୍ରଦେଶରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଆଦିକାଳ ଉପରେ ଶ୍ରୀ କାନୁନ୍‌ଗୋ ଆଲୋକପାତ କରିଛନ୍ତି ଏବଂ ଅଧୁନା ବିସ୍ମୃତ କେତେକ ଚମକପ୍ରଦ ତଥ୍ୟର ଅବତାରଣା କରିଛନ୍ତି । ଆଶା କରୁଛୁ, ଏହି ଆଲୋଚନା ଓଡ଼ିଶାରେ ଆର୍. ଏସ୍. ଏସ୍. ତଥା ହିନ୍ଦୁତ୍ୱର ପ୍ରଚାର ଏବଂ ପ୍ରସାରର ପ୍ରକ୍ରିୟାକୁ ବୁଝିବାରେ କିଛିଟା ସହାୟକ ହେବ ।

ପ୍ରବନ୍ଧଟିର ଓଡ଼ିଆ ଭାଷାନ୍ତର ପାଇଁ ଅନୁମତି ଦେଇଥିବାରୁ ଶ୍ରୀ କାନୁନ୍‌ଗୋଙ୍କୁ ଆମେ ଧନ୍ୟବାଦ ଜ୍ଞାପନ କରୁଛୁ । ଭାଷାନ୍ତର କ୍ଷେତ୍ରରେ ସୀମାବଦ୍ଧତାଜନିତ ତ୍ରୁଟି ପାଇଁ ଆମେ ସଂପୂର୍ଣ୍ଣ ଦାୟୀ ।

**ସମାର୍ଜନୀ ପ୍ରକାଶନ**

# 'ହିନ୍ଦୁ' ରାଜ୍ୟରେ ହିନ୍ଦୁତ୍ୱ

## ଓଡ଼ିଶାରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଆଦିକାଳ

ବହୁ ଆଞ୍ଚଳିକ ପରଂପରାର ସମାହାରରେ ଭାରତୀୟ ପରଂପରାର ଅନ୍ତଃସାର ଗଠିତ । ଅଞ୍ଚଳ କହିଲେ କେବଳ ଏକ ଭୌଗୋଳିକ ଅବସ୍ଥିତି ନୁହେଁ; ବରଂ ତା'ର ସାମାଜିକ ବିନ୍ୟାସ, ଇତିହାସ, ଭାଷା, ସମାଜ, ସାଂସ୍କୃତିକ ବୈଶିଷ୍ଟ୍ୟ ଏବଂ (ବା) ସେମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ସମ୍ବନ୍ଧକୁ ବୁଝାଏ । (୧) ଅତଏବ, ଏହି ବୈଶିଷ୍ଟ୍ୟଭରା ଆଂଚଳିକ ପରଂପରାଗୁଡ଼ିକ ପରିପ୍ରେକ୍ଷୀରେ 'ହିନ୍ଦୁତ୍ୱ'ର ପରିପ୍ରକାଶ କେମିତି ଘଟିଛି, ତାହା ଏକ ଅଧ୍ୟୟନର ବିଷୟ । (ଉଲ୍ଲେଖଯୋଗ୍ୟ ଯେ 'ହିନ୍ଦୁତ୍ୱ' ଏକଛତ୍ରବାଦୀ ଏବଂ ଆଞ୍ଚଳିକ ପରଂପରାର ବିବିଧତାକୁ ପୋଛି ଦେଇ ସେସବୁକୁ ଗୋଟିଏ ଡାଞ୍ଚାରେ ପକେଇବାରେ ବିଶ୍ୱାସ ରଖୁଥିବା ମତାଦର୍ଶ ।) । ହିନ୍ଦୁତ୍ୱର ବିକାଶ ସମ୍ବନ୍ଧୀୟ ଅନେକ ଅଞ୍ଚଳଭିତ୍ତିକ ଅଧ୍ୟୟନ ହୋଇଛି (୨,୩,୪,୫) । ଓଡ଼ିଶାରେ ହିନ୍ଦୁତ୍ୱର ପ୍ରଭାବ କିନ୍ତୁ ବେଶ୍ ଗଭୀର ଏବଂ ପ୍ରଭାବଶାଳୀ, ଯଦିଓ ଏଯାବତ୍ ଏହାର କୌଣସି ଅନୁଶୀଳନାତ୍ମକ ଅଧ୍ୟୟନ ହୋଇନାହିଁ । ବିଶେଷକରି ହିନ୍ଦୁତ୍ୱର ମୁଖ୍ୟ ଉତ୍ସ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଓଡ଼ିଶାରେ ପ୍ରଥମ ପ୍ରବେଶ କାଳରେ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ପରିବେଶର ରୂପରେଖ କିପରି ଥିଲା ଏବଂ ଓଡ଼ିଶା ଭଳି ଏକ 'ହିନ୍ଦୁ' ରାଜ୍ୟର ବୈଶିଷ୍ଟ୍ୟ ସହ ବୁଦ୍ଧି କୌଶଳ ଖଟେଇ ଏହା କିଭଳି ନିଜକୁ ଖାପ ଖୁଆଇ ପାରିଛି; ତା'ର ଅନୁଶୀଳନ ଏହି ପ୍ରତିବେଦନର ଉଦ୍ଦେଶ୍ୟ ।

## ଓଡ଼ିଶାଃ ଏକ 'ହିନ୍ଦୁ ରାଜ୍ୟ'ର ବିବିଧତା ଓ ବିରୋଧୋକ୍ତି

୧୯୩୬ ମସିହାରେ, ଅଧିକାଂଶ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଠିକ୍ ସେହି ସମୟରେ ଏକ ସ୍ୱତନ୍ତ୍ର ମୁସଲମାନ ବହୁଳ ପ୍ରଦେଶ ଭାବରେ ସିନ୍ଧୁ ପ୍ରଦେଶ ବି ଗଠିତ ହେଲା । କଥାଟି ଏମିତି ହେଲା, ଯତେ ଯେମିତି ହିନ୍ଦୁମାନଙ୍କୁ ତୁଷ୍ଟ କରିବା ପାଇଁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠନ କରାଗଲା (୬) । ସତରେ କିନ୍ତୁ ଓଡ଼ିଶାର ମଧ୍ୟମବର୍ଗଙ୍କର ଏକ ଗୋଷ୍ଠୀ ପାଇଁ ଏହି କଥାଟିର ଏକ ବ୍ୟାପକ ବୌଦ୍ଧିକ ଅର୍ଥ ଥିଲା (୭) । ସେମାନେ କଥାଟିକୁ କେବଳ ସାଦରେ ଗ୍ରହଣ କଲେନାହିଁ, ବରଂ ତାକୁ ସର୍ବୋତ ଭାବେ ଆପଣେଇ ନେଲେ । ସେ ସମୟର

ଔପନିବେଶିକ ଶାସକମାନଙ୍କର ଜନଗଣନା ଧର୍ମୀୟ ପରିଚୟ ଆଧାରରେ ହେଉଥିଲା । ପରିଣାମତଃ, ଭାରତୀୟ ଉପ-ମହାଦେଶରେ ଧର୍ମୀୟ ପରିଚୟ କ୍ଷେତ୍ରରେ ଏକ ଧ୍ରୁବୀକରଣ ସୃଷ୍ଟି ହେଲା (୮)। ଉକ୍ତ ଜନଗଣନାରେ ଓଡ଼ିଶାକୁ ଏକ ହିନ୍ଦୁବହୁଳ ରାଜ୍ୟ ବୋଲି ଦର୍ଶାଗଲା । ସ୍ୱାଧୀନ ଭାରତର ଜନଗଣନାରେ ଏହି ଧାରାଟି ଆହୁରି ଦୃଢ଼ୀଭୂତ ହେଲା । ୧୯୯୧ ଜନଗଣନା ଅନୁସାରେ, ଓଡ଼ିଶାରେ 'ହିନ୍ଦୁ'ମାନଙ୍କର ସଂଖ୍ୟା ୯୪.୬୭ ପ୍ରତିଶତ (୯)। ଅତଏବ, ଔପନିବେଶିକ ଶାସକମାନଙ୍କର ବର୍ଗୀକରଣ, ଓଡ଼ିଆ ମଧ୍ୟମବର୍ଗୀମାନଙ୍କର ଗୋଟିଏ ଗୋଷ୍ଠୀର ଦୃଷ୍ଟିକୋଣ ତଥା ସ୍ୱାଧୀନ ଭାରତର ଜନଗଣନା ବିଭାଗର ମୂଲ୍ୟାୟନର ଆଧାରରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଓଡ଼ିଶାକୁ ଏକ 'ହିନ୍ଦୁ ପ୍ରଦେଶ' ବୋଲି ବିବେଚନା କରେ । ଏଣୁ ଉକ୍ତ 'ହିନ୍ଦୁ ରାଜ୍ୟ'ର ବୈଶିଷ୍ଟ୍ୟର ରୂପରେଖ ଦେବା ଏବଂ ସେଥିରେ ହିନ୍ଦୁତ୍ୱ କିପରି ମେଳ ଖାଉଛି ପରୀକ୍ଷା କରିବା ଆବଶ୍ୟକ ।

ଆଧୁନିକ ଓଡ଼ିଶାର ପ୍ରାଚୀନ ଇତିହାସ ଆଜି ବି ଅନେକାଂଶରେ ଧୂମ୍ରାଭ । ଯେଉଁ ସବୁ ଭୂଖଣ୍ଡକୁ ନେଇ ଆଧୁନିକ ଓଡ଼ିଶା ଗଠିତ, ବିଭିନ୍ନ ଐତିହାସିକ କାଳ ଖଣ୍ଡରେ ତାହା ଭିନ୍ନ ଭିନ୍ନ ନାଁରେ ପରିଚିତ ଥିଲା, ଯଥାଃ ଉତ୍କଳ, କଳିଙ୍ଗ, କୋଶଳ ଏବଂ ଓଡ୍ର । ଓଡ଼ିଶାର ଭୌଗୋଳିକ ଅବସ୍ଥିତି ଏହାର ଇତିହାସକୁ ରୂପ ଦେବାରେ ଅନେକାଂଶରେ ସାହାଯ୍ୟ କଲା । ଜଙ୍ଗଲ ପାହାଡ଼ ଘେରା ମାଳ ଅଞ୍ଚଳ ଯେତିକି ଅଗମ୍ୟ ଥିଲା, ଉପକୂଳ ଅଞ୍ଚଳରେ ଛନ୍ଦାଛନ୍ଦି ହୋଇ ପ୍ରବାହିତ ହେଉଥିବା ନଦୀଗୁଡ଼ିକ ମଧ୍ୟ ଗମନାଗମନ ପାଇଁ କମ୍ ବାଧା ସୃଷ୍ଟି କରୁ ନ ଥିଲା । ସେଥିପାଇଁ ସବୁବେଳେ ଏହା ଏକ 'ଅଜ୍ଞାତ ସ୍ଥାନ' (୧୦) ଭାବରେ ପରିଚିତ ଥିଲା । ଏହା ବାଦ୍ ଓଡ଼ିଶାର କେତେକାଂଶ ବହୁ ପରେ 'ମୁସଲମାନ ଶାସନାଧୀନ' ହେଲା; ନିର୍ଦ୍ଦିଷ୍ଟ ଭାବରେ କହିଲେ, ଉତ୍ତର ଓ କେନ୍ଦ୍ରୀୟ ଭାରତ ସେମାନଙ୍କ ଶାସନକୁ ଆସିବାର ପ୍ରାୟ ତିନି ଶତାବ୍ଦୀ ପରେ (୧୫୬୮ ଖ୍ରୀଷ୍ଟାବ୍ଦରେ) । ଶୁଣାଯାଏ, ଆକବରଙ୍କ ବିଜୟୀ ସେନାପତି କହିଥିଲେ, "ଓଡ଼ିଶା ଏକ 'ବିଜୟଯୋଗ୍ୟ' ସ୍ଥାନ ନୁହେଁ ବା ମାନବୀୟ ଅଭୀପ୍ସା ପୂର୍ତ୍ତି ପାଇଁ ଉପଯୁକ୍ତ ପ୍ରକଳ୍ପ ନୁହେଁ" (୧୧)। ଏଣୁ ଓଡ଼ିଶାର ଭୌଗୋଳିକ ଅବସ୍ଥିତି ନିଜର ଦେଶଜ ସାଂସ୍କୃତିକ ପରିଚୟ ବଜାୟ ରଖିବାରେ ଅନେକାଂଶରେ ସାହାଯ୍ୟ କରିଥିଲା । କିନ୍ତୁ ସେହି ଏକା ସମୟରେ ବି ପଡ଼ୋଶୀମାନଙ୍କ ସହ ଓଡ଼ିଶାର ସଂପର୍କ ଥିଲା । ଉତ୍ତର ଓ ଦକ୍ଷିଣରୁ ପ୍ରବାହିତ ବିଭିନ୍ନ ସାଂସ୍କୃତିକ ଧାରାକୁ ଓଡ଼ିଶା ନିଜର ଦେଶଜ ସଂସ୍କୃତିରେ ମିଶେଇ ନେଉଥିଲା; ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କର ସ୍ଥାନୀୟ ଅଧିବାସୀଙ୍କ ସହ ମିଶ୍ରଣ ହେଉଥିଲା । ଉପକୂଳ ଓଡ଼ିଶାର ସାଧବମାନଙ୍କର ଦକ୍ଷିଣ-ପୂର୍ବ ଏସିଆ, ବିଶେଷକରି ଇଣ୍ଡୋନେସିଆ ସହ ସ୍ଥାୟୀ

ସାଂସ୍କୃତିକ ଓ ବାଣିଜ୍ୟିକ ସଂପର୍କ ଥିଲା ।

'କପିଳ ସଂହିତା'ରେ ଓଡ଼ିଶାକୁ ହିନ୍ଦୁମାନଙ୍କର ଏକ ପବିତ୍ର ଭୂମି ବୋଲି ବର୍ଣ୍ଣନା କରାଯାଇଛି: "ମହୀମଣ୍ଡଳରେ ଭାରତର ସ୍ଥାନ ମହନୀୟ, ଭାରତ ମଧ୍ୟରେ ଉତ୍କଳ ମହନୀୟ, ଯାହାର ସମଗ୍ର ଭୂଖଣ୍ଡ ଏକ ତୀର୍ଥ ସ୍ଥଳୀ" (୧୨) । କିନ୍ତୁ ଓଡ଼ିଶାରେ ଜୈନ ଓ ବୌଦ୍ଧ ଧର୍ମର ପ୍ରଭାବ ବି ବେଶ୍ ଶକ୍ତିଶାଳୀ ଥିଲା । ଉଦୟଗିରି ଶିଳାଲେଖରୁ ଜଣାଯାଏ ଯେ ବୌଦ୍ଧ ଧର୍ମର ବହୁ ପୂର୍ବରୁ ଏଠାରେ ଜୈନ ଧର୍ମର ପ୍ରସାର ଘଟିଥିଲା ।ଜୈନ ସାହିତ୍ୟ ଅନୁସାରେ, କଳିଙ୍ଗର ରାଜା ୨୩ତମ ତୀର୍ଥଙ୍କର ପାର୍ଶ୍ୱନାଥ (ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ)ଙ୍କ ଶିଷ୍ୟ ଥିଲେ ଏବଂ ନିଜେ ମହାବୀର ଓଡ଼ିଶା ଆସିଥିଲେ । ଖାରବେଳଙ୍କ ଶାସନ କାଳରେ (ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ) ଓଡ଼ିଶାରେ ଜୈନ ଧର୍ମ ଶୀର୍ଷ ସ୍ଥାନରେ ପହଞ୍ଚିଥିଲା ଏବଂ ପରେ ଏହାର ଅବସାନ ଘଟିଥିଲା । ବୌଦ୍ଧ ଧର୍ମ ସାହିତ୍ୟ ଅନୁସାରେ, ବୁଦ୍ଧଙ୍କ ମୃତ୍ୟୁପରେ ତାଙ୍କର ଦନ୍ତ ଅବଶେଷ କଳିଙ୍ଗର ରାଜଧାନୀକୁ ଅଣାଯାଇଥିଲା । କଳିଙ୍ଗ ଯୁଦ୍ଧ (ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ) ପରେ ଓଡ଼ିଶାରେ ବୌଦ୍ଧ ଧର୍ମର ବହୁଳ ପ୍ରସାର ଘଟିଥିଲା ଓ ପଞ୍ଚମ ଖ୍ରୀଷ୍ଟାବ୍ଦ ଯାଏ, ବିଶେଷକରି ଉଡ୍ର, କଳିଙ୍ଗ ଏବଂ କୋଶଳ ଅଞ୍ଚଳରେ ଏହା ପ୍ରଭାବଶାଳୀ ଥିଲା । ଦଶମ ଶତାବ୍ଦୀ ବେଳକୁ କ୍ରମଶଃ ଏହା ଅପସରିଗଲା । ପଞ୍ଚମ ଶତାବ୍ଦୀରେ ବୌଦ୍ଧ ଧର୍ମକୁ ପରାଜିତ କରି ଶୈବ ଧର୍ମ ବିଜୟୀ ହେଲା । ଏହି ଦୁଇ ଧର୍ମୀୟ ଧାରାର ସଂଘର୍ଷର ସ୍ୱାକ୍ଷର ଆଜି ବି ଦେଖିବାକୁ ମିଳେ: ଭୁବନେଶ୍ୱରସ୍ଥିତ ଭାସ୍କରେଶ୍ୱର ମନ୍ଦିରରେ ଏକ ବୌଦ୍ଧ ଖମ୍ବ ଗୋଟିଏ ବିଶାଳ ଶିବଲିଙ୍ଗ ଭାବେ ପୂଜା ପାଉଛି । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି ଯେ, ବ୍ରାହ୍ମଣ୍ୟବାଦୀ ହିନ୍ଦୁ ଧର୍ମର ପୃଷ୍ଠପୋଷକ ଗଙ୍ଗ ବଂଶର ଶାସକମାନେ ବୌଦ୍ଧମାନଙ୍କୁ ଅତ୍ୟାଚାର କରୁଥିଲେ ଓ ଅଣ-ହିନ୍ଦୁମାନଙ୍କୁ ଅତ୍ୟାଚାର କରିବା ସହ ସେମାନଙ୍କୁ ହିନ୍ଦୁ ଧର୍ମରେ ସାମିଲ କରିବାକୁ ଚେଷ୍ଟା କରୁଥିଲେ । ଦ୍ୱାଦଶ ଶତାବ୍ଦୀରେ ରଚିତ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ବୁଦ୍ଧଙ୍କୁ ନବମ ଅବତାର ଭାବେ ବର୍ଣ୍ଣନା କରାଯାଇଛି । ଯଦିଓ ଓଡ଼ିଶା ଭୂମିରୁ ଜୈନ ଓ ବୌଦ୍ଧ ଧର୍ମ ସଂପୂର୍ଣ୍ଣ ଅପସରି ଗଲା, କିନ୍ତୁ ସେମାନଙ୍କର ଅହିଂସା ଓ ଧର୍ମୀୟ ଉପାସନାର ଐତିହ୍ୟ ଲୋକମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ପରିଣାମତଃ, ଓଡ଼ିଶାରେ ହିନ୍ଦୁ ଧର୍ମର ବ୍ୟାଖ୍ୟାନ କେବେ ବି ଏକରୂପୀ ନ ଥିଲା; ବରଂ ଏହା ଶୈବ, ଶାକ୍ତ, ବୈଷ୍ଣବ, ତନ୍ତ୍ର ଆଦି ବହୁ ଧର୍ମୀୟ ଧାରାର ସଂଗମକୁ ପ୍ରତିନିଧିତ୍ୱ କରୁଥିଲା; ଯାହାକି ସଂସ୍କୃତ-ପ୍ରାକୃତ, ସର୍ବଭାରତୀୟ-ସ୍ଥାନୀୟ/ଆଞ୍ଚଳିକ (୧୩), ଶାସ୍ତ୍ରୀୟ-ଲୋକାଚାର (୧୪), ନଗର-ଗ୍ରାମ୍ୟ (୧୫) ଚରିତ୍ରକୁ ପ୍ରତିଫଳିତ କରୁଥିବା ଏକ ବହୁବର୍ଣ୍ଣୀ ଚିତ୍ରପଟ ସଦୃଶ ଥିଲା । ଓଡ଼ିଶାର ଉପକୂଳ ତଥା ନଦୀ ଉପତ୍ୟକାମାନଙ୍କ

କୋଳରେ ଅସଂଖ୍ୟ ହିନ୍ଦୁ ମନ୍ଦିର ଏବଂ କୀର୍ତ୍ତିରାଜି ଗଢ଼ି ଉଠିଥିଲା । ସେସବୁ ଉନ୍ନତ ଦେଶଜ ସ୍ଥାପତ୍ୟ କଳାର ସ୍ୱାକ୍ଷର ବହନ କରୁଥିଲେ । ଏହି ଅଞ୍ଚଳଟି ମଧ୍ୟ ବ୍ରାହ୍ମଣ୍ୟ ଧର୍ମର ପରଂପରା ଓ ରୀତିନୀତିର ପରାକାଷ୍ଠା ଜାହିର କରୁଥିଲା । ଘୃଣ୍ୟ ଜାତି ବିଦ୍ୱେଷ ଏବଂ ଅଂଧବିଶ୍ୱାସ (୧୬) ଏଇଠି ବି ଯୁଗ ଯୁଗ ଧରି ବସା ବାନ୍ଧି ରହିଥିଲା । ବ୍ରାହ୍ମଣ, କରଣ, ଖଣ୍ଡାୟତମାନଙ୍କ ଭଳି ହିନ୍ଦୁ ଉଚ୍ଚଜାତି ଗୋଷ୍ଠୀଟି ସମାଜର ତୃଣମୂଳ ଏବଂ ଅସ୍ପୃଶ୍ୟ ବର୍ଗଙ୍କର ଜୀବନଚର୍ଯ୍ୟାକୁ ନିୟନ୍ତ୍ରଣ କରୁଥିଲା ।

ଅନ୍ୟପକ୍ଷରେ ଓଡ଼ିଶା ଇତିହାସର ତାଳେ ତାଳେ, ତା'ର ଜଙ୍ଗଲ ଓ ପାହାଡ଼ମାନଙ୍କରେ ବହୁ ସଂଖ୍ୟକ ଆଦିବାସୀ ବାସ କରୁଥିଲେ, ଆଜି ବି କରୁଛନ୍ତି । ଆଜି ବି ଓଡ଼ିଶାରେ ୬୨ଟି ଆଦିବାସୀ ସଂପ୍ରଦାୟ ବାସ କରନ୍ତି । ଯାହାକି ଓଡ଼ିଶାର ସମୁଦାୟ ଜନସଂଖ୍ୟାର ପାଖାପାଖି ଏକ ଚତୁର୍ଥାଂଶ (୧୮) । ମୟୂରଭଞ୍ଜ (୫୭.୯ ଶତକଡ଼ା), କୋରାପୁଟ (୫୩.୪ ଶତକଡ଼ା), ସୁନ୍ଦରଗଡ଼ (୫୦.୭ ଶତକଡ଼ା), କେଉଁଝର (୪୪.୫ ଶତକଡ଼ା) ଏବଂ ଫୁଲବାଣୀ (୩୭.୩ ଶତକଡ଼ା) ଜିଲ୍ଲାମାନଙ୍କରେ ବହୁ ସଂଖ୍ୟାରେ ଆଦିବାସୀ ବାସ କରନ୍ତି । ସେମାନଙ୍କର ନିଜସ୍ୱ ଦେବାଦେବୀ ତଥା ପୂଜାବିଧି ଅଛି (୧୯), ଯାହା ବୈଦିକ ପଦ୍ଧତିଠୁଁ ସଂପୂର୍ଣ୍ଣ ଭିନ୍ନ । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କନ୍ଧମାନଙ୍କ ଭଳି କେତେକ ଆଦିବାସୀ ସଂପ୍ରଦାୟ ମଧ୍ୟରେ ନରବଳି ପ୍ରଥା ଥିଲା । ଅତଏବ ଓଡ଼ିଶାରେ, ବ୍ରାହ୍ମଣ୍ୟ ଧର୍ମ ଭଳି ବୃହତ୍ ଧର୍ମୀୟ ପରଂପରାର ଦେବାଦେବୀଙ୍କ ପୂଜାଅର୍ଚ୍ଚନା ସହ, ତା' ବାହାରେ ଥିବା କ୍ଷୁଦ୍ର ଧର୍ମୀୟ ପରଂପରାର ଦେବାଦେବୀଙ୍କ ପୂଜାଅର୍ଚ୍ଚନା ଲକ୍ଷ୍ୟ କରାଯାଏ । ଅନ୍ୟଭାଷାରେ କହିଲେ, ଉଭୟ ବୃହତ୍ ଧର୍ମୀୟ ପରଂପରା ଓ କ୍ଷୁଦ୍ର ପରଂପରାର ସହାବସ୍ଥାନ ଏଠାରେ ଦେଖିବାକୁ ମିଳେ ।

ଏସବୁ ସତ୍ତ୍ୱେ ପୁରୀ ନିବାସୀ ଜଗନ୍ନାଥ, ଓଡ଼ିଶାର ଧର୍ମୀୟ-ସାଂସ୍କୃତିକ ଓ ରାଜନୈତିକ ପରଂପରାରେ ଏକ ଅନନ୍ୟ ସ୍ଥାନ ଅଧିକାର କରନ୍ତି । ଯଦିଓ ଧର୍ମୀୟ ଧାରା ଭାବରେ ଏହା ଏତେ ପ୍ରାଚୀନ ନୁହେଁ, ତେବେ ଏହାର 'ପ୍ରାଚୀନତା'କୁ ଆରୋପିତ କରାଯାଏ । ସାମାଜିକ-ସାଂସ୍କୃତିକ ବୈଶିଷ୍ଟ୍ୟଗୁଡ଼ିକୁ ପୋଛିଦେଇ ତାକୁ 'ଏକ' ବୋଲି ଦେଖେଇବାରେ ଜଗନ୍ନାଥ ପରଂପରାର ବଡ଼ ଅବଦାନ ରହିଛି (୨୦) । ଜଗନ୍ନାଥଙ୍କୁ 'ଓଡ଼ିଶାର ଦେବତା' ଭାବରେ ପ୍ରତିପାଦିତ କରାଯାଉଥିଲେ ମଧ୍ୟ ସେଥିରେ ଅନେକ ଜଟିଳତା ଅଛି, ଯାହାର ବ୍ୟାଖ୍ୟା ଆବଶ୍ୟକ । ପ୍ରଥମତଃ, ପୁରୀ ପୂର୍ବ ଭାରତରେ ବ୍ରାହ୍ମଣ୍ୟ ଧର୍ମର ଏକ ମୁଖ୍ୟପୀଠ; କିନ୍ତୁ ଜଗନ୍ନାଥ ପରଂପରା ସହ ଆଦିବାସୀ ସଂସ୍କୃତିର ଏକ ଗଭୀର ସଂସର୍ଗ ରହିଛି (୨୧) । ଜଗନ୍ନାଥ, ମୂଳରୁ ନୀଳକନ୍ଦରରେ ନୀଳମାଧବ ରୂପେ ଶବର ସଂପ୍ରଦାୟ ଦ୍ୱାରା ପୂଜିତ ହେଉଥିଲେ ବୋଲି ବହୁଳ ଭାବରେ ବିଶ୍ୱାସ

କରାଯାଏ । ତିନି ଠାକୁରଙ୍କର (ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା) ବିଗ୍ରହ ନିର୍ମାଣ ଶୈଳୀରୁ ବି ଆଦିବାସୀ ସଂପୃକ୍ତି ବିଷୟ ଜଣାପଡ଼େ । ଐତିହାସିକମାନଙ୍କ ମତରେ, ମୁଣ୍ଡାରୀ ଭାଷାର ମୂଳ ଶବ୍ଦ 'ମୁଦଳା'ରୁ ମାଦଳା ପାଞ୍ଜିର ଉତ୍ପତ୍ତି, ଯାହାର ଅର୍ଥ 'ତଥ୍ୟ ସହ ଉପସ୍ଥାପିତ କରିବା ବା ପ୍ରମାଣ ସହ ସାମ୍ନା କରିବା' (୨୨)। ଅତଏବ, ଓଡ଼ିଶାରେ ହିନ୍ଦୁ ଧର୍ମ, ଆଦିବାସୀ ଧର୍ମୀୟ ପରଂପରାରୁ କିଛି ଗ୍ରହଣ କରିଥିବା ବେଳେ, ଆଦିବାସୀ ଧର୍ମୀୟ ପରଂପରା ହିନ୍ଦୁ ଧର୍ମରୁ କିଛି ଗ୍ରହଣ କରିଥିଲା । ଅନ୍ୟ ଭାଷାରେ କହିଲେ, ଓଡ଼ିଶାରେ ହିନ୍ଦୁକରଣ ପ୍ରକ୍ରିୟା ଆଦାନପ୍ରଦାନ ମାଧ୍ୟମରେ ସଂଘଟିତ ହୋଇଥିଲା । ଦ୍ୱିତୀୟତଃ, ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ, ଶୈବ ଶାସକ ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗ, ପୁରୀରେ ଜଗନ୍ନାଥ (ବିଷ୍ଣୁଙ୍କର ଏକ ଅବତାର) ମନ୍ଦିର ନିର୍ମାଣ କରିବାର ନିଷ୍ପତ୍ତି ନେବା ପଛରେ ଏକ ରାଜନୈତିକ ଉଦ୍ଦେଶ୍ୟ ନିହିତ ଥିଲା । ସେ ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଯେଉଁ ଜୁଆର ମାଡ଼ି ଚାଲିଥିଲା, ତାକୁ ସୁହାଇବା ପାଇଁ ଜଗନ୍ନାଥ ମନ୍ଦିର ନିର୍ମାଣ ଏକ ବ୍ୟାବହାରିକ ଚାଲ୍ ଥିଲା । ଅତଏବ, ଓଡ଼ିଶାର ଶାସକମାନଙ୍କର ମାନ୍ୟତା ପାଇଁ ଜଗନ୍ନାଥଙ୍କୁ ତାଙ୍କ ଜନ୍ମକ୍ଷଣରୁ ହିଁ ଏକ ଆୟୁଧ ଭାବେ ବ୍ୟବହାର କରାଯାଉଥିଲା (୨୩)। ଶେଷରେ, ତୃତୀୟ ଅନଙ୍ଗଭୀମ ଓଡ଼ିଶା ସାମ୍ରାଜ୍ୟକୁ ଜଗନ୍ନାଥଙ୍କୁ ଉତ୍ସର୍ଗ କରି ନିଜକୁ ତାଙ୍କର ପ୍ରଥମ ସେବକ (ରାଉତ) ଭାବେ ଘୋଷଣା କଲେ । ଜଗନ୍ନାଥ ଓଡ଼ିଶାର ସମ୍ରାଟ ସ୍ତରକୁ ଉନ୍ନୀତ ହେଲେ (ମାଦଳା ପାଞ୍ଜିରେ ଦର୍ଶିତ) । ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' କବିତାରେ ଏହିଭଳି ବର୍ଣ୍ଣନା ଦେଖିବାକୁ ମିଳେ । ପରବର୍ତ୍ତୀ ସମୟରେ ଓଡ଼ିଶାକୁ ଯେଉଁମାନେ ବି ଶାସନ କଲେ- ମୋଗଲ, ମରହଟ୍ଟା ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀ-ସମସ୍ତେ ଜଗନ୍ନାଥଙ୍କର ଏହି ଅତି ଜାଗତିକ ଆଧିପତ୍ୟ (ସେ ନାମକୁ ମାତ୍ର ହେଉନା କାହିଁକି)କୁ ସ୍ୱୀକାର ପୂର୍ବକ ନିଜ ପାଇଁ ମାନ୍ୟତା ଓ ଆଧିପତ୍ୟ ହାସଲ କରିପାରୁଥିଲେ ।

ଔପନିବେଶିକ ଶାସନ କାଳରୁ, ସାଧାରଣ ଜନମାନସରେ ଏମିତି ଏକ ଭାବନା ସୃଷ୍ଟିହେଲା ଯେ ୧୫୬୮ରେ ଓଡ଼ିଶା ଆଫଗାନମାନଙ୍କ ଅକ୍ତିଆରକୁ ଆସିବା ପର ଠାରୁ, ଓଡ଼ିଶାର ରାଜନୈତିକ ରଣାଙ୍ଗନରେ ଜଗନ୍ନାଥ ଜଣେ ମୁଖ୍ୟ ନାୟକ ଭାବେ ଉଭା ହେଲେ । ଆଫଗାନମାନଙ୍କଠାରୁ ପରାଜିତ ହେବା ପରେ, ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବିଭିନ୍ନ ରାଜନୈତିକ ଓ ପ୍ରଶାସନିକ ଖଣ୍ଡରେ ବିଭକ୍ତ ହେଲା । ମୋଗଲ, ମରହଟ୍ଟା ଓ ବ୍ରିଟିଶ ଶାସନ କାଳରେ ଏହା ଆହୁରି ଅନେକ ଭାଗରେ ବିଭକ୍ତ ହେଲା । କିନ୍ତୁ ଏହି ସମଗ୍ର କାଳଖଣ୍ଡରେ, ବିଭିନ୍ନ ଭୂଖଣ୍ଡରେ ବିଚ୍ଛିନ୍ନ ଓଡ଼ିଆମାନଙ୍କ ପାଇଁ ଜଗନ୍ନାଥ ଥିଲେ ଐକ୍ୟର ଏକ ଶକ୍ତିଶାଳୀ ପ୍ରତୀକ ଏବଂ ସେମାନଙ୍କର ଆଞ୍ଚଳିକ ଓ ପ୍ରଜାତିଗତ ଅସ୍ମିତାକୁ ଦୃଢ଼ୀଭୂତ

କରିବାରେ ସେ ସହାୟକ ହେଉଥିଲେ । ପରବର୍ତ୍ତୀ ସମୟରେ, ଜଗନ୍ନାଥଙ୍କୁ କେନ୍ଦ୍ରକରି ଏକ ଅସ୍ମିତାଗତ ରାଜନୀତି ଏଠାରେ ରୂପ ନେଲା । (୨୪)

## ଅସ୍ମିତାର ଅନ୍ୱେଷଣ: ଓଡ଼ିଆ, ହିନ୍ଦୁ ଓ ଭାରତୀୟ

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ରିତ କରିବାର ପ୍ରୟାସ ଦାନା ବାନ୍ଧିଲା । ସେ ସମୟର ଓଡ଼ିଆ ସାହିତ୍ୟ ଓ ଭାଷା ଆନ୍ଦୋଳନ ଓଡ଼ିଆ ଅସ୍ମିତା ଅନ୍ୱେଷଣର ଏକ ବଳିଷ୍ଠ ଅଭିବ୍ୟକ୍ତି ଥିଲା । ଏହା ବାଦ୍, ଅନ୍ୟ ଦୁଇ ପ୍ରକାର ଅସ୍ମିତାର ଆବିର୍ଭାବ ହେଲା: ଯଥା 'ହିନ୍ଦୁ ଅସ୍ମିତା' ଓ 'ଭାରତୀୟ ଅସ୍ମିତା' । ଅତଏବ, ଓଡ଼ିଶାରେ ଏକା ସମୟରେ, ପରସ୍ପରକୁ ପ୍ରଭାବିତ କରୁଥିବା ତିନି ପ୍ରକାରର ଅସ୍ମିତାକୁ କେନ୍ଦ୍ର କରି ତିନି ପ୍ରକାରର ଜାତୀୟତା ଦେଖାଦେଇଥିଲା: ଓଡ଼ିଆ, ହିନ୍ଦୁ ଓ ଭାରତୀୟ । (୨୫)

ରାଧାନାଥ ରାୟଙ୍କ ମହାକାବ୍ୟ 'ମହାଯାତ୍ରା' ଏବଂ ରାମଶଙ୍କର ରାୟଙ୍କ ନାଟକ 'କାଞ୍ଚିକାବେରୀ'ରେ ଏକ ଧୂମିଳ 'ହିନ୍ଦୁ' ଜାତୀୟତାର ଧାରା ପରିଲକ୍ଷିତ ହୁଏ । ଯେହେତୁ ଓଡ଼ିଶା ଏକ ହିନ୍ଦୁବହୁଳ ରାଜ୍ୟ ଏବଂ ଜଗନ୍ନାଥ ଓଡ଼ିଆ ଅସ୍ମିତାର ଏକ ପ୍ରଭାବଶାଳୀ ପ୍ରତୀକ, ତେଣୁ ହିନ୍ଦୁ ଜାତୀୟତା ଓ ଓଡ଼ିଆ ଜାତୀୟତା ମଧ୍ୟରେ ବିଶେଷ କିଛି ଫରକ ଦୃଶ୍ୟମାନ ହେଉ ନ ଥିଲା । ଏପରିକି ଗୋପବନ୍ଧୁଙ୍କ ଭଳି ଯେଉଁମାନେ ଓଡ଼ିଶାରେ ' ଭାରତୀୟ ଜାତୀୟତା କଥା କହୁଥିଲେ, ସେମାନେ ମଧ୍ୟ ଜଗନ୍ନାଥଙ୍କର ବଡ଼ ପ୍ରବକ୍ତା ଥିଲେ । ଗୋପବନ୍ଧୁଙ୍କ ଭାଷାରେ: 'ଜଗତ-ସରସେ ଭାରତ କମଳ/ ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।' (୨୬) ନୈଷ୍ଠିକ ହିନ୍ଦୁ ଗୋପବନ୍ଧୁ, ୧୯୨୭ ମସିହାରେ ହିନ୍ଦୁ ମହାସଭା, ଓଡ଼ିଶା ଶାଖାର ଅଧ୍ୟକ୍ଷ ଥିଲେ । ଓଡ଼ିଆ ଜାତୀୟତାର ପୁରୋଧା ମଧୁସୂଦନଙ୍କ ଜଗନ୍ନାଥ କେବଳ ଜଣେ ହିନ୍ଦୁ ଦେବତା ନ ଥିଲେ, ବରଂ ଓଡ଼ିଆ ଜାତିର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଉଲ୍ଲେଖଯୋଗ୍ୟ ଯେ, ମଧୁସୂଦନ କେବଳ ଜଣେ ଖ୍ରୀଷ୍ଟୀୟାନ ନ ଥିଲେ, ଅଖିଳ ଭାରତୀୟ ଖ୍ରୀଷ୍ଟୀୟାନ ସଂଘର ଦୁଇ ଦୁଇ ଥର ଅଧ୍ୟକ୍ଷ ଥିଲେ । କିନ୍ତୁ ତାଙ୍କର ଧର୍ମୀୟ ଆନୁଗତ୍ୟ, ଜଗନ୍ନାଥଙ୍କୁ କେନ୍ଦ୍ରରେ ରଖି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରିବା ପ୍ରୟାସ ପଥରେ ପ୍ରତିବନ୍ଧକ ନ ଥିଲା । ୧୯୨୮ ମସିହାରେ "ହେ ଜଗନ୍ନାଥ, ଆମକୁ ରକ୍ଷାକର" ବୋଲି ସମସ୍ୱରରେ ଉଚ୍ଚାରଣ କରିବା ପାଇଁ ଏବଂ ଅନ୍ଧକାରରୁ ପ୍ରଗତି ଓ ସମୃଦ୍ଧିର ପଥ ଆଡ଼କୁ ନେଇଯିବାକୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରିବା ପାଇଁ ଏକ ଆବେଗଭରା ଆହ୍ୱାନ ସେ ସମସ୍ତ ଓଡ଼ିଆଙ୍କୁ ଦେଇଥିଲେ ।

ଅତଏବ, 'ଓଡ଼ିଆ', 'ହିନ୍ଦୁ' ଓ 'ଭାରତୀୟ' ଅସ୍ମିତା କେବଳ ପରସ୍ପରର ପରିପୂରକ

ନ ଥିଲେ, ବରଂ ଜଗନ୍ନାଥ ପରଂପରାରେ ଏ ସମସ୍ତ ଗୁଂଥି ହୋଇଥିଲେ । ଫଳତଃ, ଓଡ଼ିଆ ଅସ୍ମିତା ନିର୍ମାଣରେ କେବଳ ମାତ୍ର ହିନ୍ଦୁ ଧର୍ମର ଅବଦାନ ନ ଥିଲା, ବହୁ ଅନ୍ୟାନ୍ୟ ଉପାଦାନ ଏଥିରେ ଯୋଗଦାନ କରିଥିଲେ । ସର୍ବୋପରି, ଓଡ଼ିଶାର ସ୍ୱତନ୍ତ୍ର ଆଂଚଳିକ ଓ ସାଂସ୍କୃତିକ ପରଂପରାରେ ଜଗନ୍ନାଥଙ୍କ ଅନନ୍ୟ ଗୁରୁତ୍ୱ ଏକ ପ୍ରଭାବଶାଳୀ ପ୍ରତୀକ ଭାବେ ବ୍ୟବହୃତ ହୋଇଥିଲା । ଏହି ଆଞ୍ଚଳିକ ଓଡ଼ିଆ ଅସ୍ମିତା, ବୃହତ୍ତର 'ଭାରତୀୟ' ଅସ୍ମିତା ସହ ସାମନ୍ୱୟ ରକ୍ଷା କରି ନିଜର ସ୍ୱତନ୍ତ୍ର ଅସ୍ମିତା ଅନ୍ୱେଷଣ କରି ଚାଲିଥିଲା, ଯାହାର ପରିଣତିରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠିତ ହୋଇଥିଲା । (୨୭) ଆଜି ମଧ୍ୟ ଓଡ଼ିଶାରେ ରାଜନୈତିକ ଶକ୍ତିକୁ ସଂଗଠିତ କରିବା ପ୍ରକ୍ରିୟାରେ ଏହି ପ୍ରତୀକବାହୀ ଜଗନ୍ନାଥ ପରଂପରା ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରେ । (୨୮)

## ଅଣ-ହିନ୍ଦୁ 'ଅନ୍ୟମାନେ'

ଓଡ଼ିଶାର ସାମାଜିକ ଦୃଶ୍ୟପଟରେ ବିଭିନ୍ନ ଅଣ-ହିନ୍ଦୁ ଗୋଷ୍ଠୀମାନଙ୍କର ସ୍ଥାନ ସଂପର୍କରେ ବର୍ତ୍ତମାନ ବିଚାର କରାଯାଉ । ଓଡ଼ିଶାରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସହଜସାଧ୍ୟ ଉତ୍‌ଥାନକୁ ସମ୍ଭବତଃ ଏହା ବୁଝିବାରେ ସାହାଯ୍ୟ କରିବ । ଏହି ପରିପ୍ରେକ୍ଷୀରେ ଦୁଇଟି ବିଷୟ ବ୍ୟାଖ୍ୟା କରିବା ଆବଶ୍ୟକ । ପ୍ରଥମତଃ, ଓଡ଼ିଶାର ଇତିହାସ ନିର୍ମାଣ ପ୍ରକ୍ରିୟା, ଯାହାକି ବସ୍ତୁତଃ ଏକ ଉଦ୍ଭାବିତ ଇତିହାସ; ଦ୍ୱିତୀୟତଃ, ଜାତୀୟତାବାଦୀ ତଥା ଔପନିବେଶିକ ଶକ୍ତିମାନଙ୍କ ଦ୍ୱାରା ବର୍ଣ୍ଣିତ ଇତିହାସ ଏବଂ ସେ ଆଧାରରେ ରଚିତ ଓଡ଼ିଶା ଇତିହାସରେ ଦେଖାଦେଇଥିବା ସମସ୍ୟା ଓ ଜଟିଳତା ।

## ମୁସଲମାନ

ଉପରୋକ୍ତ ଉଦ୍ଭାବିତ ଇତିହାସ ଅନୁସାରେ, ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ମୁକୁନ୍ଦଦେବ, ବଙ୍ଗଳାର ଆଫଗାନ ଶାସକଙ୍କ ସେନାପତି କଳାପାହାଡ଼ ଦ୍ୱାରା ୧୫୬୮ ମସିହାରେ ପରାଜିତ ହେବାପରେ ମୁସଲମାନମାନଙ୍କ ସହ ଓଡିଶାର ସ୍ଥାୟୀ ସଂପର୍କ ସ୍ଥାପିତ ହେଲା । ୧୫୬୮ରେ ମୋଗଲମାନେ ଆଫଗାନମାନଙ୍କୁ ହଟେଇ ଦୁଇ ଶତାବ୍ଦୀ ଧରି ଓଡ଼ିଶାକୁ ଶାସନ କଲେ । (୨୯) ୧୭୫୧ ସାଲରେ ଓଡ଼ିଶାର ଶାସନଭାର ମରହଟ୍ଟାମାନଙ୍କ ହାତକୁ ଗଲା (୩୦) ଏବଂ ଶେଷରେ, ୧୮୦୩ ମସିହାରେ ବ୍ରିଟିଶ ଶାସନାଧୀନ ହେଲା । ଦେଶର ଅନ୍ୟ ଅଞ୍ଚଳ ତୁଳନାରେ, ଓଡ଼ିଶାରେ 'ମୁସଲମାନ ଶାସନ' ବିଳମ୍ବରେ ସ୍ଥାପିତ ହେଲା । କେବଳ ସେତିକି ନୁହେଁ, ପଡ଼ୋଶୀ ବଙ୍ଗଳା ଭଳି (୩୧) ଏଠାରେ ସେମାନଙ୍କ ଶାସନ ଏତେ ବଳିଷ୍ଠ ଓ ସ୍ଥାୟୀ ନ ଥିଲା । ଦେଶୀୟ ଲୋକଙ୍କ ଭିତରେ ମୁସଲମାନ ଧର୍ମ ପ୍ରବେଶ କରିବାକୁ ବି ସମର୍ଥ ହେଲା ନାହିଁ । ଓଡ଼ିଶାର ଅତ୍ୟନ୍ତ

କ୍ଷୁଦ୍ର ମୁସଲମାନ ଜନସଂଖ୍ୟା ମଧ୍ୟରେ ଅଳ୍ପ କେତେକ ଥିଲେ ଆଫଗାନ ବଂଶଧର। କିନ୍ତୁ ଅନ୍ୟ ସମସ୍ତେ ଥିଲେ ସାଧାରଣ ସୈନିକ, ଯୁଦ୍ଧ ଶିବିର ସହାୟକ ଏବଂ ନିମ୍ନଜାତିରୁ ଧର୍ମାନ୍ତରିତ ଜନଗଣଙ୍କ ବଂଶଧର। (୩୨) ବ୍ରଜସୁନ୍ଦର ଦାସ ସଂକଳିତ 'ହାମିଲଟନଙ୍କ ହିନ୍ଦୁସ୍ଥାନରେ ଓଡ଼ିଶା'(୧୮୨୦) ପୁସ୍ତକରେ ଉଲ୍ଲେଖ ଅଛି : "ମୁସଲମାନମାନେ ବା ଅନ୍ୟ କୌଣସି ଆକ୍ରମଣକାରୀ ଓଡ଼ିଶାକୁ ସଂପୂର୍ଣ୍ଣଭାବେ ଅକ୍ତିଆର କରିପାରି ନ ଥିଲେ। ସେଠାରେ ହିନ୍ଦୁ ରୀତିନୀତି ସେମିତି ଅକ୍ଷତ ଅବସ୍ଥାରେ ଅଛି ଏବଂ ମୁସଲମାନଙ୍କ ସଂଖ୍ୟା ଅତି କମ" (୩୩)। ଅତଏବ, ବଙ୍ଗଳା ଭଳି (୩୪), ଓଡ଼ିଶାରେ ବ୍ୟାପକ ଧର୍ମାନ୍ତରଣ ହୋଇ ନ ଥିଲା।' 'ହିନ୍ଦୁଧର୍ମର ଗଡ଼'-ଓଡ଼ିଶାରେ କାଁ ଭାଁ କେତେଜଣଙ୍କୁ ଧର୍ମାନ୍ତର କରେଇବାରେ ଇସଲାମ ସମର୍ଥ ହୋଇଥିଲା। ଉଦ୍ଭାବିତ ଇତିହାସ କହେ ଯେ କଳାପାହାଡ଼ ସମୟରୁ (୩୫) ତକୀ ଖାଁ ପର୍ଯ୍ୟନ୍ତ ଦୁଇ ଶତାବ୍ଦୀ ଧରି ମୁସଲମାନ ଶାସନ ସମୟରେ ଜଗନ୍ନାଥ ଓ ପୁରୀ ବହୁ ଆକ୍ରମଣର ଶିକାର ହୋଇଥିଲେ। ଏଠାରେ ସ୍ମରଣୀୟ, ତୁର୍କମାନଙ୍କର ଭାରତ ଆଗମନ ପୂର୍ବରୁ ମନ୍ଦିରକୁ ନେଇ ଲଢ଼ାଭିଡ଼ା ରାଜନ୍ୟବର୍ଗ ପାଇଁ ଆଧିପତ୍ୟର ବିଷୟଥିଲା। (୩୬) ୧୪୬୦ ଦଶକରେ, ସୂର୍ଯ୍ୟବଂଶୀ ଗଜପତି ସାମ୍ରାଜ୍ୟର ପ୍ରତିଷ୍ଠାତା କପିଳେନ୍ଦ୍ର ଦେବ ତାମିଲ ଅଞ୍ଚଳ ଦଖଲ କରିବା ସମୟରେ କାବେରୀ ନଦୀ ଉପତ୍ୟକାରେ ଅବସ୍ଥିତ ଅନେକ ଶିବ ଓ ବିଷ୍ଣୁ ମନ୍ଦିର ଧ୍ୱସ୍ତ କରିଥିଲେ। (୩୭) ଅତଏବ, ସମୟ ସମୟରେ ମନ୍ଦିର ଧ୍ୱଂସ କରିବା ଅର୍ଥ ଥିଲା ଶତ୍ରୁ ରାଜା ଉପରେ ନିଜର ଆଧିପତ୍ୟ ଜାହିର କରିବା।

'ମୁସଲମାନ' ଶାସନ କାଳରେ ବି ଏହାର ଅନେକ ବ୍ୟତିକ୍ରମ ଥିଲା। ଆକବରଙ୍କ ସମୟରୁ ମୋଗଲ ଶାସକମାନେ ସେମାନଙ୍କ ରାଜ୍ୟରେ ଥିବା ମନ୍ଦିରଗୁଡ଼ିକୁ ରାଷ୍ଟ୍ରର ସଂପତ୍ତି ବୋଲି ଜ୍ଞାନ କରୁଥିଲେ ଏବଂ ସେଗୁଡ଼ିକୁ ତଥା ବ୍ରାହ୍ମଣ ପୂଜକମାନଙ୍କୁ ସୁରକ୍ଷା ପ୍ରଦାନ କରୁଥିଲେ। (୩୮) ଆକବରଙ୍କ ସେନାପତି ମାନସିଂହ ଜଗନ୍ନାଥ ମନ୍ଦିର ଆକ୍ରମଣ ନ କରିବା ପାଇଁ ଏକ ସନନ୍ଦ ଲେଖିବାକୁ ଆଫଗାନମାନଙ୍କୁ ବାଧ୍ୟ କରିଥିଲେ। ମାନସିଂହଙ୍କ ରାଣୀ ମୁକ୍ତି ମଣ୍ଡପ ପ୍ରତିଷ୍ଠା କରିଥିଲେ ଯାହାକି ମନ୍ଦିର ଭିତରେ ବ୍ରାହ୍ମଣମାନଙ୍କର ଆଧିପତ୍ୟର ଏକ ପୀଠ। ମୁର୍ଶିଦ୍ କୁଲି ଖାଁଙ୍କ ବିଶ୍ୱସ୍ତ ମୀର୍ ହବିବ୍ ଜଗନ୍ନାଥ ମନ୍ଦିରର ଉନ୍ନତି କଳ୍ପେ ଅନେକ କାର୍ଯ୍ୟ କରିଥିଲେ। ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବ ଦ୍ୱିତୀୟ (୧୮ଶ ଶତାବ୍ଦୀ) ଯଦିଓ ମୁସଲମାନ ଧର୍ମ ଗ୍ରହଣ କରିଥିଲେ, ତଥାପି ବଙ୍ଗଳା, ବିହାର ତଥା ଓଡ଼ିଶାର ସୁବେଦାରମାନଙ୍କ ଆକ୍ରମଣରୁ ଜଗନ୍ନାଥଙ୍କୁ ରକ୍ଷା କରିବା ପାଇଁ ଚେଷ୍ଟା କରିଥିଲେ। କୌତୂହଳର ବିଷୟ, ଧର୍ମାନ୍ତର ସତ୍ତ୍ୱେ ମନ୍ଦିରରେ ଜଗନ୍ନାଥଙ୍କର ପୂଜା ଉପାସନା କରିବା ପାଇଁ ତାଙ୍କୁ ଅନୁମତି ଥିଲା। ମାଦଳାପାଞ୍ଜିରେ

ଏ ବିଷୟ ଉଲ୍ଲେଖ ଅଛି ।

ସୁଫୀ ଧାରା ଓଡ଼ିଶାରେ ଲୋକପ୍ରିୟ ହେବା ଫଳରେ ସତ୍ୟ-ପୀର ପରମ୍ପରା ଜନ୍ମନେଲା । (୩୯)ଆଜି ମଧ୍ୟ ହିନ୍ଦୁମାନେ ଉଭୟ ସତ୍ୟନାରାୟଣ ଓ ପୀରଙ୍କୁ ପୂଜା କରନ୍ତି, ଯାହା ଓଡ଼ିଶାରେ ହିନ୍ଦୁ ଓ ସୁଫି ଧାରା ସମନ୍ୱୟର ଏକ ନିଛକ ନିଦର୍ଶନ ।(୪୦) ସୁଫି ଧର୍ମ ପୀଠ କଟକର କଦମ ରସୁଲ ଓ ଖୋର୍ଦ୍ଧା ନିକଟସ୍ଥ କାଇପଦରର ବୁଖାରୀ ସାହିବଙ୍କୁ ବହୁ ସଂଖ୍ୟକ ହିନ୍ଦୁ ଦର୍ଶନ ଉଦ୍ଦେଶ୍ୟରେ ଯାଇଥା'ନ୍ତି । ଆଜି ବି ସୁଫି ଉପାସକ ବୁଲା ଫକୀରମାନଙ୍କୁ କାଁ ଭାଁ ଦେଖିବାକୁ ମିଳେ । ଦୁର୍ଭାଗ୍ୟବଶତଃ, ସେମାନେ ଆଜି ଭିକ୍ଷାବୃତ୍ତି କରିବାକୁ ବାଧ୍ୟ ହେଉଛନ୍ତି । ମୁସଲମାନ ଶାସନର ପ୍ରଭାବ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ବି ଦେଖିବାକୁ ମିଳେ । ବହୁ ଫାର୍ଶୀ ଓ ଆରବୀୟ ଶବ୍ଦ ଓଡ଼ିଆ ସାହିତ୍ୟିକ କ୍ଷେତ୍ରରେ ବି ଦେଖିବାକୁ ମିଳେ । ବହୁ ଫାର୍ଶୀ ଓ ଆରବୀୟ ଶବ୍ଦକୁ ଓଡ଼ିଆ ସାହିତ୍ୟିକ ଏବଂ ପାଠକ ଆପଣେଇ ନେଇଛନ୍ତି । (୪୧) ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଏସବୁ ଭାଷାର ଶବ୍ଦ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ଦେଖିବାକୁ ମିଳୁଥିଲା; ଯାହାର ସମ୍ଭବତଃ ଦୁଇଟି କାରଣ ଥିଲା -ମୁସଲମାନ ଶାସନ ପ୍ରତି ତିକ୍ତତା ବା ଏହିସବୁ ଭାଷାଗୁଡ଼ିକ ବିଷୟକ ଅଜ୍ଞତା । ସେ ଯାହାହେଉ ନା କାହିଁକି, ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ସେ ସବୁ ଶବ୍ଦର ବ୍ୟବହାର ଓଡ଼ିଆ ସାହିତ୍ୟକମାନେ କରିବାକୁ ଲାଗିଲେ । ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକୀରମୋହନ ସେନାପତି ତାଙ୍କ ଉପନ୍ୟାସ ଓ ଗଳ୍ପରେ ବହୁ ଆରବୀୟ ଓ ଫାର୍ଶୀ ଶବ୍ଦ ବ୍ୟବହାର କରିଛନ୍ତି (ଚାଲାଣ, ଲାୟକ, ଗଫଲିତ, ଆଦମି, ଦୌଲତ, ମେହନତ...ଇତ୍ୟାଦି) (୪୨) । ବ୍ରାହ୍ମଣ ମାତା ଓ ମୋଗଲ ପିତାଙ୍କର ସନ୍ତାନ ସାଲବେଗ ଓଡ଼ିଆରେ ବହୁ ଭଜନ ରଚନା କରିଛନ୍ତି, ଯାହା ଆଜି ବି ଜଗନ୍ନାଥ ମନ୍ଦିରରେ ପ୍ରତି ସକାଳେ ଗାନ କରାଯାଏ ।

ହିନ୍ଦୁ-ମୁସଲିମ ସଂପର୍କ ଏକ ପାଖିଆ ନ ଥିଲା । ଇସଲାମ ଧର୍ମ ଗ୍ରହଣ କରିଥିବା ସ୍ଥାନୀୟ ଲୋକମାନେ ନିଜର କେତେକ ପୁରୁଣା ଧର୍ମୀୟ-ସାଂସ୍କୃତିକ ଅଭ୍ୟାସଗୁଡ଼ିକ ବଜାୟ ରଖିଥିଲେ । ଯଦିଓ ସହରୀ ମୁସଲମାନମାନେ ସଚେତନ ଭାବରେ ଫାର୍ଶୀ ବ୍ୟବହାର କରୁଥିଲେ, ଗ୍ରାମାଞ୍ଚଳର ଲୋକମାନଙ୍କର ମାତୃଭାଷା ଥିଲା ଓଡ଼ିଆ । ସହରୀ ମୁସଲମାନଙ୍କ ଦ୍ୱାରା କଥିତ ଫାର୍ଶୀରେ ମଧ୍ୟ ଓଡ଼ିଆ ଭାଷାର ପ୍ରଭାବ କିଛି କମ୍ ନ ଥିଲା, ଯାହାକୁ ଫାର୍ଶୀ ଭାଷାର ଏକ ସ୍ଥାନୀୟ ସଂସ୍କରଣ କୁହାଯାଇପାରିବ । କେତେକ ସ୍ଥାନରେ, ମୁସଲମାନମାନେ ହିନ୍ଦୁ ପର୍ବପର୍ବାଣୀରେ ଅଂଶଗ୍ରହଣ କରୁଥିଲେ(ଆଜି ବି କରନ୍ତି) । ଉଦାହରଣସ୍ୱରୂପ, ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ତାପଙ୍ଗର ମୁସଲମାନ କଟୁଆଳ ଦୁର୍ଗାପୂଜାରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ମଥାରେ ପଗଡ଼ି ଭିଡ଼ି, କପାଳରେ ତିଳକ

ଲଗେଇ ପୂଜା ଶୋଭାଯାତ୍ରାକୁ ସେ ନେତୃତ୍ୱ ଦିଅନ୍ତି । ଶୋଭାଯାତ୍ରା ତାଙ୍କ ଘରକୁ ଯାଏ ଓ ସେଠାରେ ଠାକୁରାଣୀ ପ୍ରସାଦ ପାଆନ୍ତି ।

ଧର୍ମୀୟ ସମନ୍ୱୟର ବହୁ ଉଦାହରଣ ସତ୍ତ୍ୱେ 'ହିନ୍ଦୁ' ଅସ୍ମିତା ଯେ ସମୟ ସମୟରେ ମୁସଲମାନମାନଙ୍କ ଉପରେ ନିଜର ଆଧିପତ୍ୟ ଜାହିର କରୁ ନ ଥିଲା ସେମିତି ନୁହଁ । କିନ୍ତୁ ଏତିକି କହିହେବ ଯେ ଓଡ଼ିଶାରେ ହିନ୍ଦୁ ଓ ମୁସଲମାନମାନେ ମୋଟାମୋଟି ଶାନ୍ତି ଓ ସୌହାର୍ଦ୍ଦ୍ୟର ସହ ବାସ କରୁଥିଲେ । ଅନ୍ୟ ପକ୍ଷରେ, ମୁସଲମାନ ଓ ଖ୍ରୀଷ୍ଟୀୟାନ ଆଦି ସଂଖ୍ୟାଲଘୁ ଗୋଷ୍ଠୀକୁ ଶତ୍ରୁ ବା ଦୁଷ୍ଟଶକ୍ତି ଭାବରେ ପ୍ରତିପାଦିତ କରିବା ବା ସେମାନଙ୍କୁ 'ପର' ବୋଲି ବିବେଚନା କରିବା ହିନ୍ଦୁତ୍ୱ ରାଜନୀତିର ତାତ୍ତ୍ୱିକ ଆଧାର । ଏ ଆଧାର ପାଇଁ ଓଡ଼ିଶାର ମାଟି କିନ୍ତୁ ଅନୁକୂଳ ନୁହେଁ । ଏଠାରେ ମୁସଲମାନମାନଙ୍କ ସଂଖ୍ୟା ଅତି କମ୍ ହୋଇଥିବାରୁ ଓଡ଼ିଶାରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ନିଜର ପ୍ରଚାର ପାଇଁ ମୁସଲମାନ-ବିରୋଧୀ ଭାବନା ଉଦ୍ରେକ କରିବାରେ ଜୋର ଦିଏ ନାହିଁ, ଯାହା ସେ ମୁସଲମାନ ବହୁଳ ରାଜ୍ୟମାନଙ୍କରେ କରେ । ସଂଘ ନିଜକୁ ଏଠାରେ ଅଧିକ ସକାରାତ୍ମକ ଏବଂ ଗଠନମୂଳକ ବୋଲି ଦାବି କରେ । (୪୩) ସଂଘର ନିଜ ବିଷୟରେ ଏହି ଆକଳନ ଯେ ଏକ ଅର୍ଦ୍ଧସତ୍ୟ, ଓଡ଼ିଶାରେ ତା'ର ବିକାଶର ବିଭିନ୍ନ ପର୍ଯ୍ୟାୟକୁ ନିରେଖି ଦେଖିଲେ ବୁଝିହେବ ।

## ଖ୍ରୀଷ୍ଟୀୟାନ

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଉପକୂଳ ଓଡ଼ିଶା ଖ୍ରୀଷ୍ଟୀୟାନ୍ ମିଶନାରୀଙ୍କ ସଂସ୍ପର୍ଶରେ ଆସିଲା । ଓଡ଼ିଶା ସେତେବେଳେ ଇଂରେଜ, ଫରାସୀ, ଡଚ୍, ଡେନିସ୍, ପର୍ତ୍ତୁଗୀଜ ଆଦି ୟୁରୋପୀୟ ବଣିକମାନଙ୍କ ପାଇଁ ନୌବାଣିଜ୍ୟର ଏକ ପେଣ୍ଠ ଥିଲା । ଗଂଜାମରେ ଏକ ୱେସ୍‌ଲିଆନ୍ ଚର୍ଚ୍ଚ ଏବଂ ଜଳେଶ୍ୱରରେ ଏକ କ୍ୟାଥଲିକ୍ ଚର୍ଚ୍ଚ ଗଢ଼ିଉଠିଲା । ବଙ୍ଗଳାର ଶ୍ରୀରାମପୁର ମିଶନାରୀମାନେ ନ୍ୟୁ ଟେଷ୍ଟାମେଣ୍ଟ୍ ଓ ଅନ୍ୟ କେତେକ ଖ୍ରୀଷ୍ଟୀୟ ଧର୍ମପୁସ୍ତକ ଓଡ଼ିଆରେ ଅନୁବାଦ କଲେ । କଟକ ଓ ପୁରୀରେ ସେଗୁଡ଼ିକ ବାଣ୍ଟିବା ତଥା ଧର୍ମପ୍ରଚାର କରିବା ପାଇଁ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିବା ଜଣେ ବଙ୍ଗବାସୀଙ୍କୁ ପଠାଇଲେ । ସେଥିରେ କିଛି ଫଳ ହେଲା ନାହିଁ ।

୧୮୦୩ ମସିହାରେ ମରହଟ୍ଟାମାନଙ୍କଠାରୁ ବ୍ରିଟିଶମାନେ ଓଡ଼ିଶାର ଶାସନ ଭାର ହାତକୁ ନେଲେ । ସେତେବେଳର ବଡ଼ଲାଟ ଲର୍ଡ ୱେଲେସ୍‌ଲି ଏକ ନିର୍ଦ୍ଦେଶାବଳୀ ଜାରି କଲେ ଯେ "ଜଗନ୍ନାଥ ମନ୍ଦିର ତଥା ବ୍ରାହ୍ମଣ ଓ ତୀର୍ଥଯାତ୍ରୀମାନଙ୍କର ଧର୍ମୀୟ ଭାବନାର ଯଥୋଚିତ ମର୍ଯ୍ୟାଦା ରକ୍ଷା ପାଇଁ ସମସ୍ତ ପ୍ରକାରର ସତର୍କତା ଅବଲମ୍ବନ କରାଯାଉ"

(୪୪)। ବ୍ରିଟିଶ ଶାସକମାନେ ବ୍ୟାବହାରିକ ବୁଦ୍ଧି ଦୃଷ୍ଟିରୁ ଜଗନ୍ନାଥ ମନ୍ଦିରର 'ତତ୍ତ୍ୱାବଧାନ ଓ ପରିଚାଳନା' ନିଜ ହାତକୁ ନେଲେ ଏବଂ ମରହଟ୍ଟାମାନଙ୍କ ସମୟରୁ ପ୍ରଚଳିତ ତୀର୍ଥକର ବି ଆଦାୟ କଲେ। ଅନ୍ୟପକ୍ଷରେ ମିଶନାରୀମାନେ ସରକାରଙ୍କର ମନ୍ଦିର ସହ ସଂପର୍କକୁ ତୀବ୍ର ବିରୋଧ କଲେ ଏବଂ ମୂର୍ତ୍ତି ପୂଜା ସହ ସଂପର୍କ ଛିନ୍ନ କରିବାକୁ ଲଗାତର ଚାପ ପ୍ରୟୋଗ କଲେ ଓ ତୀର୍ଥଯାତ୍ରାକୁ ବିଦ୍ରୂପ କରିବାକୁ ବି ପଛାଇଲେ ନାହିଁ। ଏପରିକି ଜଗନ୍ନାଥଙ୍କୁ 'ମହାବିପତ୍ତି' ବୋଲି ଅଭିହିତ କଲେ। ରଥଯାତ୍ରା ସମୟରେ ହେଉଥିବା ମୃତ୍ୟୁ ଏବଂ ରଥ ଆଗରେ ଶୋଇ ଆତ୍ମବଳି ଦେବା ଭଳି ଜଘନ୍ୟ କାର୍ଯ୍ୟକୁ ସେମାନେ ଭର୍ତ୍ସନା କଲେ। ସେମାନଙ୍କ ପାଇଁ ଜଗନ୍ନାଥ ଥିଲେ 'କୁକାର୍ଯ୍ୟ, ଯାତନା, ଜୀବନହାନି ଏବଂ ବହୁ ପାପ'ର ପ୍ରତୀକ ଏବଂ ସରକାର ହିନ୍ଦୁ ଦେବତାଙ୍କର ତତ୍ତ୍ୱାବଧାରକ ହେବା ଅର୍ଥ ଖ୍ରୀଷ୍ଟୀୟାନ୍ ଧର୍ମର ବିରୋଧାଚରଣ କରିବା। ବହୁ ଲଢ଼େଇ ପରେ ମିଶନାରୀମାନେ ଶେଷରେ ବିଜୟୀ ହେଲେ। ୧୮୫୬ ମସିହାରେ ବ୍ରିଟିଶ ସରକାର ମନ୍ଦିର ସହ ସମସ୍ତ ସଂପର୍କ ଛିନ୍ନ କରି ତାର ତତ୍ତ୍ୱାବଧାନ ଓ ପରିଚାଳନା ଦାୟିତ୍ୱ ଖୋର୍ଦ୍ଧା ରାଜାଙ୍କ ହାତରେ ଅର୍ପଣ କଲେ।

ଯଦିଓ ମିଶନାରୀମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଶାରେ ଧର୍ମ ପ୍ରଚାର କରିବା, ଏହା କିନ୍ତୁ କାଠିକର ପାଠ ଥିଲା। ଜଗନ୍ନାଥ ଅନୁଗାମୀମାନଙ୍କୁ ଧର୍ମାନ୍ତରୀତ କରିବା ସହଜ ନ ଥିଲା। ୧୮୨୨ ମସିହାରେ ଓଡ଼ିଶାରେ ପ୍ରଥମ କରି ମିଶନ ସ୍ଥାପନ କରାଗଲା। ମାତ୍ର ଜଣେ ସ୍ଥାନୀୟ ଲୋକକୁ ଧର୍ମାନ୍ତରୀତ କରିବାକୁ ଛଅ ବର୍ଷ ଲାଗିଗଲା। ୧୮୨୬ ମସିହାରେ ଏରୁଣ ସେନାପତି ନାମକ ଜଣେ ତେଲୁଗୁ-ଓଡ଼ିଆ ତନ୍ତୀ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲେ। କିନ୍ତୁ ପ୍ରକୃତ ଅର୍ଥରେ କଟକ ଜିଲ୍ଲା ଅନ୍ତର୍ଗତ ଟାଙ୍ଗୀ ଅଂଚଳର ବ୍ରାହ୍ମଣ ଗଙ୍ଗାଧର ଷଡ଼ଙ୍ଗୀ ଓଡ଼ିଶାର ପ୍ରଥମ ଧର୍ମାନ୍ତରୀତ ଖ୍ରୀଷ୍ଟୀୟାନ୍। ୧୮୨୮ରେ ସେ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ହୋଇଥିଲେ। ଗଙ୍ଗାଧର ଷଡ଼ଙ୍ଗୀ ସାଧୁ ସୁନ୍ଦର ଦାସଙ୍କ ଶିଷ୍ୟ ଥିଲେ। ସାଧୁ ସୁନ୍ଦର ଦାସ ଏକୀଶ୍ୱରବାଦରେ ବିଶ୍ୱାସ କରୁଥିଲେ ଏବଂ ମୂର୍ତ୍ତି ପୂଜାର ବିରୋଧ କରୁଥିଲେ। ଖ୍ରୀଷ୍ଟ ଧର୍ମ ଯଦିଓ ତାଙ୍କୁ ପ୍ରଭାବିତ କରିଥିଲା ଓ ସେ ଶିଷ୍ୟମାନଙ୍କୁ ଖ୍ରୀଷ୍ଟ ଧର୍ମ ଶାସ୍ତ୍ର ପଢ଼ିବାକୁ ଉତ୍ସାହିତ କରୁଥିଲେ, ନିଜେ କିନ୍ତୁ ସେଥିରେ ଦୀକ୍ଷିତ ହେବାକୁ ଚାହୁଁ ନ ଥିଲେ। ଅବଶ୍ୟ ତାଙ୍କର କେତେକ ଶିଷ୍ୟ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲେ। ଏହା ମିଶନାରୀମାନଙ୍କର ମନୋବଳ ବୃଦ୍ଧି କଲା। କିନ୍ତୁ ଓଡ଼ିଶାରେ ବ୍ୟାପକ ଭାବରେ ଧର୍ମାନ୍ତରୀକରଣ ହେଲା ନାହିଁ। ପ୍ରଥମ ଅବସ୍ଥାରେ, ଜଣ ଜଣକୁ ଧର୍ମାନ୍ତର କରେଇବାକୁ ମିଶନାରୀମାନେ ସକ୍ଷମ ହୋଇଥିଲେ। ଯଦିଓ ସାଧାରଣରେ ଧରି ନିଆଯାଏ ଯେ, ସମାଜର ନିମ୍ନବର୍ଗର ଲୋକମାନେ ଧର୍ମାନ୍ତରୀତ ହୁଅନ୍ତି ଓ ପାର୍ଥିବ ଲାଳସା ଏଥିପାଇଁ ଦାୟୀ; କିନ୍ତୁ ଓଡ଼ିଶାରେ

ଏହାର ବିପରୀତ କଥା ଲକ୍ଷ୍ୟ କରାଯାଏ । ଓଡ଼ିଶାରେ ପ୍ରଥମ ଧର୍ମାନ୍ତରୀତ ବ୍ୟକ୍ତିମାନେ ଉଚ୍ଚ ଜାତିର ଥିଲେ ଏବଂ ପାର୍ଥିବ ଲାଳସା ଏହାର କାରଣ ନ ଥିଲା । ବରଂ ଉଭୟ ଧର୍ମର ତୁଳନାତ୍ମକ ଅଧ୍ୟୟନ ପରେ ସେମାନେ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ, ସ୍କୁଲ୍ ଓ ଅନାଥାଶ୍ରମ ମାଧ୍ୟମରେ କିଛି ଧର୍ମାନ୍ତରୀକରଣ ହେଲା । ଆଦିବାସୀ ଇଲାକାକୁ ଯିବା ପରେ ଯାଇ ସେମାନେ ଅଧିକ ସଫଳତା ପାଇଲେ । ଏଠାରେ, ବହୁ କାରଣ ମଧ୍ୟରୁ ପାର୍ଥିବ ପ୍ରେରଣା ଧର୍ମାନ୍ତର ପାଇଁ ଅନ୍ୟ ଏକ କାରଣ ଥିଲା ।

ଓଡ଼ିଶାରେ ଖ୍ରୀଷ୍ଟ ଧର୍ମ ପ୍ରଚାର ପାଇଁ ମିଶନାରୀମାନଙ୍କୁ ବହୁ ପ୍ରତିବନ୍ଧକର ସାମନା କରିବାକୁ ପଡୁଥିଲା, ଯଥା: କଠୋର ସାମାଜିକ ପ୍ରଥା, ନିରକ୍ଷରତା, ପ୍ରତିକୂଳ ପରିବେଶ, ଗମନାଗମନର ଅସୁବିଧା ଏବଂ ସର୍ବୋପରି ଜଗନ୍ନାଥଙ୍କ ଅଖଣ୍ଡ ଆଧ୍ୟାତ୍ମିକ ପ୍ରଭାବ । ଏସବୁ ପ୍ରତିବନ୍ଧକ ସତ୍ତ୍ୱେ, ମିଶନାରୀମାନେ ନିଜର କାମ କରିଚାଲିଲେ । ମୂର୍ତ୍ତି ପୂଜା, କନ୍ୟାଶିଶୁ ହତ୍ୟା, ନରବଳି ଆଦି ପ୍ରଥା ବିରୋଧରେ ସେମାନେ ସ୍ୱର ଉତ୍ତୋଳନ କଲେ; ଦୁଃସ୍ଥ, ବାସହୀନ, ଦରିଦ୍ରମାନଙ୍କ ପାଇଁ ଡାକ୍ତରଖାନା, ଆଶ୍ରୟସ୍ଥଳୀ, ଅନାଥାଶ୍ରମ ସ୍ଥାପନ କଲେ; ଦୁର୍ଭିକ୍ଷ ସମୟରେ ଅସହାୟମାନଙ୍କ ସେବା କଲେ । ସେମାନଙ୍କର ଧର୍ମ ପ୍ରଚାର କାର୍ଯ୍ୟ ହେତୁ ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ସଂଚାର ହେଲା । ରେଭରେଣ୍ଡ ଏ. ସଟନ୍ ଓଡ଼ିଆ-ଇଂରାଜୀ ବ୍ୟାକରଣ ଓ ଓଡ଼ିଆ ଅଭିଧାନ ସଂକଳନ କଲେ, ଗୀତଗୋବିନ୍ଦ, ଅମରକୋଷ, ବତ୍ରିଶ ସିଂହାସନ ଅନୁବାଦ କଲେ ଓ ଓଡ଼ିଆ ଗେଜେଟ୍‌ର ସଂପାଦନା କଲେ । ଡବ୍ଲୁ. ସି. ଲେସି ଓଡ଼ିଆ ବ୍ୟାକରଣ ଏବଂ ଜେ. ଫିଲିପ୍ ଓଡ଼ିଆ ଭୁଗୋଳ ଲେଖିଲେ । ଅନେକ ଖବରକାଗଜ ଏବଂ ପତ୍ରପତ୍ରିକାର ଜନ୍ମ ହେଲା । ମିଶନାରୀମାନେ ଅଗମ୍ୟ ଆଦିବାସୀ ଇଲାକାରେ ସ୍କୁଲ୍ ଓ ଡାକ୍ତରଖାନା ଖୋଲିଲେ । ଧର୍ମ ପ୍ରଚାର ଯଦିଓ ମୁଖ୍ୟ ଉଦ୍ଦେଶ୍ୟ ଥିଲା, ସେମାନଙ୍କର ଜନହିତକର କାର୍ଯ୍ୟକୁ ମଧ୍ୟ ଗୁରୁତ୍ୱ ଦେବା ଆବଶ୍ୟକ ।

ସାମୟିକ ବୈରତା ବ୍ୟତିରକେ, ଓଡ଼ିଶାରେ ହିନ୍ଦୁ-ମୁସଲମାନ ଏବଂ ହିନ୍ଦୁ-ଖ୍ରୀଷ୍ଟୀୟାନ୍ ସଂପର୍କ କେବେ ବି ଶତ୍ରୁ ଭାବାପନ୍ନ ନ ଥିଲା । ଓଡ଼ିଆମାନେ ବ୍ୟାପକ ଭାବେ ମୁସଲମାନ ବା ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ହେବାର ନଜିର ବି ନ ଥିଲା । ସଂଖ୍ୟା ଦୃଷ୍ଟିରୁ ମୁସଲମାନ ଓ ଖ୍ରୀଷ୍ଟୀୟାନ୍‌ମାନେ, ହିନ୍ଦୁ ଧର୍ମ ପ୍ରତି ଏକ ବିପଦ ଭାବରେ ଉଭା ହୋଇ ନ ଥିଲେ । ଧର୍ମୀୟ ପରିଚୟର ଭିନ୍ନତା ସତ୍ତ୍ୱେ, ଉଭୟ ସମୁଦାୟର ଜନସାଧାରଣ ସମାନ ଭାବେ ଓଡ଼ିଆ ସାଂସ୍କୃତିକ ପରଂପରାର ଭାଗୀଦାର । ତେଣୁ ସେମାନଙ୍କର 'ପରପଣିଆ' ହିନ୍ଦୁମାନଙ୍କ ପ୍ରତି କେବେ ବି ବିପଦ ନ ଥିଲା । ଏପ୍ରକାର ପ୍ରେକ୍ଷାପଟରେ, ଓଡ଼ିଶାରେ ହିନ୍ଦୁତ୍ୱର ପ୍ରବେଶ ଅନୁଧ୍ୟାନର ବିଷୟ ।

## ହିନ୍ଦୁତ୍ୱ ଓ ଜଗନ୍ନାଥ ସଂସ୍କୃତି

ଆର୍‌ଏସ୍‌ଏସ୍‌ର ବିବେଚନାରେ ଜଗନ୍ନାଥ-ଓଡ଼ିଆ-ହିନ୍ଦୁ-ଭାରତୀୟ ଅନ୍ତଃସଂପର୍କ

ହିନ୍ଦୁତ୍ୱର ପ୍ରଚାର ପାଇଁ ଏକ ଚମତ୍କାର ଆଧାର । ପ୍ରାକ୍-ଔପନିବେଶିକ ଶାସନ ତଥା ଓଡ଼ିଆ ହିନ୍ଦୁ ଉଚ୍ଚ ଜାତି-ମଧ୍ୟମବର୍ଗୀୟ ଗୋଷ୍ଠୀ ଜଗନ୍ନାଥ ମହିମାର ଯେଉଁ ସୌଧଟି ନିର୍ମାଣ କରିଛି ଏବଂ ଓଡ଼ିଆମାନଙ୍କର ସାମାଜିକ, ରାଜନୈତିକ, ଧାର୍ମିକ, ସାଂସ୍କୃତିକ ଜୀବନରେ ତାର ପ୍ରତୀକାତ୍ମକ ଗୁରୁତ୍ୱର ସକାରାତ୍ମକ ଇଂଗିତଗୁଡ଼ିକୁ ଆର୍‌ଏସ୍‌ଏସ୍ ବେଶ୍ ଭଲ ଭାବରେ ହୃଦୟଙ୍ଗମ କରିଛି । ଏଣୁ ଆର୍‌ଏସ୍‌ଏସ୍ ଓଡ଼ିଶାର ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତି ବୋଲି ଅଭିହିତ କରେ, କାରଣ ଓଡ଼ିଶାର ସମସ୍ତ ଧର୍ମୀୟ ଶାଖା, କ୍ଷୁଦ୍ର ସାଂସ୍କୃତିକ ପରଂପରା ଉପରେ ଜଗନ୍ନାଥ ମହିମା ଅଖଣ୍ଡ ପ୍ରଭାବ ବିସ୍ତାର କରିଛି । ଏ କଥା ସତ ଯେ, ମହିମା ଧର୍ମ ଭଳି ଅନେକ ପ୍ରତିବାଦୀ-ପରଂପରା ଓଡ଼ିଶାରେ ଜନ୍ମ ନେଇଥିଲା, କିନ୍ତୁ କାଳକ୍ରମେ ସେସବୁ ଜଗନ୍ନାଥ ପରଂପରାରେ ଲୀନ ହୋଇଯାଇଛି । (୪୫) ଏଣୁ ଓଡ଼ିଶାରେ ଆର୍‌ଏସ୍‌ଏସ୍ ହିନ୍ଦୁତ୍ୱକୁ ଏକ ବିକଳ୍ପ ଭାବରେ ଉପସ୍ଥାପିତ କରିବାର ନିଷ୍ଫଳ ଚେଷ୍ଟା ନ କରି, ଜଗନ୍ନାଥ ସଂସ୍କୃତି ସହ ନିଜ ମତାଦର୍ଶର ସାଦୃଶ୍ୟ ଥିବା କଥା ଚତୁରତାର ସହ ଦାବି କରେ । (୪୬)

ଆର୍‌ଏସ୍‌ଏସ୍ ମତରେ, ଜଗନ୍ନାଥ ଜଣେ 'ବନବାସୀ' ଦେବତା ଏବଂ ଓଡ଼ିଶା ଏକ ବନବାସୀ ରାଜ୍ୟ । ଏହାର ବିଶ୍ୱାସ, ଓଡ଼ିଆମାନେ ବନବାସୀ ଚରିତ୍ରର । ସେମାନଙ୍କ ଭିତରେ ଏବେ ବି ଆଦିବାସୀ ସମାଜର ଆଦିମ ଅକପଟତା, ସରଳତା ଓ ସଚ୍ଚୋଟପଣିଆ ବଂଚିଛି । ଏଣୁ ଏହା ଦାବି କରେ, ଓଡ଼ିଶାର ଲୋକଚରିତ୍ର ତା'ର ଆଦର୍ଶ ପ୍ରତି ଅନୁକୂଳ । ଏପ୍ରକାର ଚିନ୍ତାଧାରା ପଛରେ ସମ୍ଭାବ୍ୟ କାରଣଟି ହୁଏତ ଓଡ଼ିଶା ଭଳି ଏକ ପଛୁଆ ରାଜ୍ୟର ଗରିବ, ଅଶିକ୍ଷିତ, ଧର୍ମଭୀରୁ, ଦୁର୍ବଳମନା ଜନସାଧାରଣଙ୍କୁ ନିଜ ଆଦର୍ଶରେ ପ୍ରଭାବିତ କରିବା ଅପେକ୍ଷାକୃତ ସହଜ । ସେ ଯାହା ହେଉନା କାହିଁକି, ଓଡ଼ିଆ ଚରିତ୍ର ଭଳି ଯଦି କିଛି ପ୍ରକୃତରେ ଥାଏ, ତାହା ଯେ ଅପରିବର୍ତ୍ତନୀୟ ଏବଂ ଏକରୂପୀ ସେମିତି କିଛି ଭାବିବାର ନାହିଁ । ଓଡ଼ିଶା ଭିତରେ ବି ତାହା ସ୍ଥାନ ଓ ଶ୍ରେଣୀ ବିଶେଷରେ ଭିନ୍ନ । ଆହୁରି ମଧ୍ୟ, ଲୋକଚରିତ୍ର ନିର୍ଦ୍ଦିଷ୍ଟ ଏବଂ ଅପରିବର୍ତ୍ତନୀୟ ନୁହେଁ; ସମୟ ଅନୁସାରେ ତାହା ବଦଳେ । ୧୭୩୦ରେ ବାଲେଶ୍ୱର ଜିଲ୍ଲାର ଚଷାଯୋଦ୍ଧାମାନଙ୍କର ସାହସ ଓ ନିର୍ଭୀକତାକୁ କିଂସ୍‌ଫୋର୍ଡ (୪୭) ପ୍ରଶଂସା କଲାବେଳେ, ଏ. ଷ୍ଟର୍ଲିଂ (୪୮)ସମତଳ ଅଂଚଳର ଓଡ଼ିଆମାନଙ୍କୁ ନମ୍ର, ଶାନ୍ତ ଏବଂ ସହଜରେ ସମ୍ଭାଳି ହେଉଥିବା ମଣିଷ ବୋଲି କହିଛନ୍ତି । ଯଦି କେହି ବି ଏକରୂପୀ ଓଡ଼ିଆ ଚରିତ୍ର ବିଷୟରେ କୁହେ, ତେବେ ଏହା ମାନିବାକୁ ପଡ଼ିବ ଯେ ବହୁ କ୍ରିୟା ପ୍ରକ୍ରିୟା ଦେଇ ଏହାର ନିର୍ମାଣ ହୋଇଛି; ଯଥାଃ ଭୌଗୋଳିକ ପରିସ୍ଥିତି ଓ ପ୍ରକୃତିର ତାଡ଼ନା, ବିଭିନ୍ନ ଧର୍ମୀୟ ମତବାଦର ଉତ୍‌ଥାନ ପତନ, ଏକ ସର୍ବବ୍ୟାପ୍ତ ସାମ୍ରାଜ୍ୟର ଦୀର୍ଘ ଅନୁପସ୍ଥିତି, ଓଡ଼ିଆ ଭାଷାଭାଷୀ ଅଞ୍ଚଳର ବିଖଣ୍ଡନ ଏବଂ

ଅନ୍ୟ ରାଜ୍ୟ ସହିତ ମିଶ୍ରଣ, ଚୈତନ୍ୟ କର୍ତ୍ତୃକ ନବବୈଷ୍ଣବବାଦର ବଳିଷ୍ଠ ପ୍ରଭାବ, ମୁସଲମାନ, ମରହଟ୍ଟା ଓ ସ୍ଥାନୀୟ ହିନ୍ଦୁ ରାଜାମାନଙ୍କର ନିପୀଡ଼ନ, ବ୍ରିଟିଶ ଔପନିବେଶବାଦର ହସ୍ତକ୍ଷେପ, ଓଡ଼ିଆ ଅସ୍ମିତା ପାଇଁ ଆନ୍ଦୋଳନ, ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଏବଂ ଉତ୍ତର-ଔପନିବେଶିକ ଅନୁଭବ । ଅତଏବ, ଓଡ଼ିଆ ଚରିତ୍ରର ନିର୍ମାଣ ଏକ ଜଟିଳ ଐତିହାସିକ ପ୍ରକ୍ରିୟାର ପରିଣାମ । ଏହାର ଆଧାର ଆର୍‌ଏସ୍‌ଏସ୍‌ର କଳ୍ପିତ ସରଳ, ନିର୍ମଳ, ଅପ୍ରଭାବିତ ବନବାସୀ ନୁହେଁ ।

ଆର୍‌ଏସ୍‌ଏସ୍‌ର ଅନ୍ୟ ଏକ ଯୁକ୍ତି ଯେ ଜଗନ୍ନାଥ ସଂସ୍କୃତିର ସାରବତ୍ତା ଭକ୍ତି ଏବଂ ଓଡ଼ିଆମାନେ ନୈଷ୍ଠିକ ହିନ୍ଦୁ । ଯେହେତୁ ରାଷ୍ଟ୍ରଭକ୍ତି ହିନ୍ଦୁତ୍ୱର ମୂଳମନ୍ତ୍ର, ତେଣୁ ଓଡ଼ିଆ ପରଂପରା ଆର୍‌ଏସ୍‌ଏସ୍ ମତାଦର୍ଶର ସମଧର୍ମୀ । ଆର୍‌ଏସ୍‌ଏସ୍ କିନ୍ତୁ ଜଗନ୍ନାଥ ଭକ୍ତି ଓ ରାଷ୍ଟ୍ରଭକ୍ତି ମଧ୍ୟରେ ଫରକ ଦେଖେ । ଜଣେ ପ୍ରମୁଖ ପ୍ରଚାରକଙ୍କ ମତରେ, ଯଦିଓ ଓଡ଼ିଆମାନେ ଧର୍ମପରାୟଣ, ସେମାନେ କିନ୍ତୁ ଧର୍ମର ବ୍ୟକ୍ତିଗତ ଦିଗ ଉପରେ ଗୁରୁତ୍ୱ ଦିଅନ୍ତି । ରାଷ୍ଟ୍ର ପ୍ରତି କିନ୍ତୁ ସେ ପ୍ରକାରର ଭକ୍ତି ଦେଖାନ୍ତି ନାହିଁ । ଓଡ଼ିଆମାନଙ୍କର ଭକ୍ତିଭାବ ଓ ଆଧ୍ୟାତ୍ମିକ ଶକ୍ତିକୁ ହିନ୍ଦୁ ରାଷ୍ଟ୍ର ଗଠନ ଦିଗରେ କିଭଳି ବ୍ୟବହାର କରାଯାଇପାରିବ, ତାହା ଆର୍‌ଏସ୍‌ଏସ୍ ପାଇଁ ଏକ ଆହ୍ୱାନ । ଏହା ନିଶ୍ଚିତ ଯେ, ଭକ୍ତି ଜଗନ୍ନାଥ ପରଂପରାର ସାରକଥା । ଭକ୍ତ ଜଗନ୍ନାଥଙ୍କ ସହ ଏକାତ୍ମ ହେବା, ତାଙ୍କ ଠାରେ ସଂପୂର୍ଣ୍ଣ ଲୀନ ହୋଇଯିବା ଏହା ଦାବି କରେ । ଉଭୟ ମଧ୍ୟରେ କିନ୍ତୁ ଏକ ମୌଳିକ ଫରକ ରହିଛି । ଜଗନ୍ନାଥ ପରଂପରା ଉଦାର ଓ ନମନୀୟ; ସେଠି ଭକ୍ତର ଆଧ୍ୟାତ୍ମିକ ଆନନ୍ଦ ପ୍ରାପ୍ତି ଲାଗି ଯଥେଷ୍ଟ ସ୍ୱାତନ୍ତ୍ର୍ୟ ରହିଛି । ଅନ୍ୟପକ୍ଷରେ, ଆର୍‌ଏସ୍‌ଏସ୍‌ମାର୍କା ରାଜନୈତିକ ହିନ୍ଦୁ ଧର୍ମ ଅତି ମାତ୍ରାରେ ସଂକୁଚିତ ଓ କଠୋର; ନିଜର ଅନୁଗାମୀମାନଙ୍କୁ କାମନା, କନ୍ଦଳ, ଘୃଣା ଓ ଅନ୍ୟକୁ 'ପର' ଭାବିବାର ଅନ୍ଧାରୀ ଜଗତରେ ବିଚରଣ କରିବାକୁ ଏହା ଶିଖାଏ ।

ଆର୍‌ଏସ୍‌ଏସ୍ ଦାବି କରେ ସମନ୍ୱୟ ଓ ଉଦାରତା ଉଭୟ ହିନ୍ଦୁତ୍ୱ ଓ ଜଗନ୍ନାଥ ସଂସ୍କୃତିର ସାରକଥା; ଯେହେତୁ ଉଭୟ ଯୋଡ଼ିବାରେ ହିଁ ବିଶ୍ୱାସ କରନ୍ତି । ଆର୍‌ଏସ୍‌ଏସ୍ ଦାବି କରେ ଓଡ଼ିଶାରେ ଜାତିପ୍ରଥା ଅଛି, ହେଲେ ଜାତିଗତ ଧ୍ରୁବୀକରଣ ନାହିଁ । ଅନ୍ୟ ରାଜ୍ୟମାନଙ୍କରେ ଜାତିଗତ ରାଜନୀତିର ପ୍ରଭାବ ବେଶ୍ ତୀବ୍ର । ଓଡ଼ିଶାରେ କିନ୍ତୁ ଆର୍‌ଏସ୍‌ଏସ୍ ପାଇଁ ଏହା ବିପଦ ନୁହେଁ, ଯେଉଁଥିପାଇଁ ହିନ୍ଦୁତ୍ୱର ପ୍ରଚାର ସହଜ । ଏହା ସତ୍ୟ ଯେ ପ୍ରତ୍ୟେକ ହିନ୍ଦୁ ଶାଖା ବା ପରଂପରା ପାଇଁ ଜଗନ୍ନାଥଙ୍କ ଛତ୍ର ତଳେ ଜାଗାଟିଏ ଅଛି; ହେଲେ ସେ ଛତ୍ର ବାହାରେ ଅଛୁଆଁ ହୋଇ ରହିବାର ତାଲିକାଟି ମଧ୍ୟ ବେଶ୍ ଲମ୍ବା (୫୦) । ଜଗନ୍ନାଥଙ୍କ ସିଂହଦୁଆର କେବଳ ମୁସଲମାନ, ଖ୍ରୀଷ୍ଟୀୟାନ ଓ ଇହୁଦୀମାନଙ୍କ ପାଇଁ ବନ୍ଦ ନୁହେଁ; ନିମ୍ନଜାତି ହିନ୍ଦୁ, ଗୋମାଂସ ଭକ୍ଷକ ଆଦିବାସୀ, ଏପରିକି 'ପତିତା'ମାନଙ୍କ

ପାଇଁ ବି ତାହା ବନ୍ଦ । ଏଥିରୁ, ବ୍ରାହ୍ମଣବାଦୀ ହିନ୍ଦୁ ଧର୍ମ ଓ ହିନ୍ଦୁତ୍ୱ ରାଜନୀତିର ସାଦୃଶ୍ୟ ଲକ୍ଷ୍ୟ କରିବା କଥା । ଅବଶ୍ୟ କେତେକ ଗୋଷ୍ଠୀକୁ ମନ୍ଦିର ଭିତରକୁ ପ୍ରବେଶ ବାରଣ କରିବା କେତେକାଂଶରେ ଧର୍ମୀୟ ଆଚାର ସଂପର୍କିତ ପବିତ୍ର-ଅପବିତ୍ର ଓ ଛୁଆଁ-ଅଛୁଆଁ ଭାବନା ଦ୍ୱାରା ପ୍ରେରିତ । କିନ୍ତୁ ହିନ୍ଦୁତ୍ୱ ରାଜନୀତିରେ ସଂଖ୍ୟାଲଘୁ ଗୋଷ୍ଠୀଙ୍କୁ 'ପର' ମଣିବା ଏକ ବୌଦ୍ଧିକ ବିଷୟ । ଦର୍ଶନ ଦୃଷ୍ଟିରୁ ଜଗତର ନାଥ ଜଗନ୍ନାଥ ସାର୍ବଜନୀନତା ଓ ମହାନତାର ପ୍ରତୀକ । ତାଙ୍କର ସବୁକିଛି ବଡ଼ ବା ମହାନ- ବଡ଼ ଦେଉଳ, ବଡ଼ଦାଣ୍ଡ, ମହୋଦଧି, ମହାପ୍ରସାଦ... । ନିତିଦିନିଆ ଜୀବନରେ, ମହାପ୍ରସାଦ କେବେ ତାର ପବିତ୍ରତା ହରାଏନାହିଁ । ହଣ୍ଟର୍‌ଙ୍କ ଭାଷାରେ, "ସମାଜର ନିମ୍ନତମ ମଣିଷ ଉଚ୍ଚତମ ମଣିଷକୁ ମହାପ୍ରସାଦ ଦେଇପାରେ ବା ତା'ଠାରୁ ମାଗିପାରେ । ତା'ର ପବିତ୍ରତା ବର୍ଣ୍ଣ, ଧର୍ମ, ଜାତିର ପ୍ରାଚୀର ଲଂଘିଯାଏ; ପୁରୀ ପଣ୍ଡା ବି ଜଣେ ଖ୍ରୀଷ୍ଟୀୟାନ୍‌ଠାରୁ ଏହା ଗ୍ରହଣ କରିବ" (୫୧) । ଦଳିତ ଜନଙ୍କର ଦେବତା ଜଗନ୍ନାଥ । ତେଣୁ ପତିତପାବନ । ଜାତି, ଧର୍ମ, ବିଶ୍ୱାସର ପ୍ରଭେଦକୁ ଲଂଘି ଜଗନ୍ନାଥ ରଥଯାତ୍ରା ସମୟରେ ରାସ୍ତାକୁ ଓହ୍ଲାଇ ଆସନ୍ତି । ବିଶ୍ୱ ଭାତୃତ୍ୱ ଓ ପ୍ରେମ ଜଗନ୍ନାଥଙ୍କର ବାଣୀ । ଅନ୍ୟପକ୍ଷରେ, ହିନ୍ଦୁତ୍ୱ କେବଳ ଗୈରିକ ଭ୍ରାତୃତ୍ୱର ସଂକୁଚିତ ଗଣ୍ଡି ମଧ୍ୟରେ ଆବଦ୍ଧ । ତା'ର ଉଦାରତା ହିନ୍ଦୁ ରାଷ୍ଟ୍ର ନିର୍ମାଣରେ ବ୍ରତୀମାନଙ୍କ ମଧ୍ୟରେ ହିଁ ସୀମାବଦ୍ଧ । ଏପରିକି ହିନ୍ଦୁ ଧର୍ମର ଅନେକ ଶାଖା ଓ ପରଂପରାକୁ କୋଳେଇ ନେବାକୁ ଏହା ଅସମର୍ଥ । ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ, ଏହି ଦୁଇ ପରଂପରା ଅଣ-ହିନ୍ଦୁ ଗୋଷ୍ଠୀଟିକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଦେଖନ୍ତି ଏବଂ ସେ ମଧ୍ୟରେ ଫରକ ବେଶ୍ ଅର୍ଥପୂର୍ଣ୍ଣ । ଅତଏବ, ଉପରୋକ୍ତ ଆଲୋଚନାର ପୃଷ୍ଠଭୂମିରେ, ଓଡ଼ିଶାରେ ସାଂପ୍ରଦାୟିକ ରାଜନୀତିର ବିକାଶକୁ ସମୀକ୍ଷା କରିବା ଉପଯୋଗୀ ହେବ ।

## ସାଂପ୍ରଦାୟିକ ରାଜନୀତିର ଉତ୍‌ଥାନ:
## ହିନ୍ଦୁ ମହାସଭା ଏବଂ ମୁସଲିମ ଲିଗ୍

ବିଂଶ ଶତାବ୍ଦୀର ତିରିଶ ଦଶକରେ ହିନ୍ଦୁ-ମୁସଲମାନ ସାଂପ୍ରଦାୟିକ ରାଜନୀତିର ଗରମାଗରମ ବେଶ୍ ଲକ୍ଷଣୀୟ । ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ପରେ, ଓଡ଼ିଶାରେ ବି ତା'ର ଉଷ୍ଣତା ଅନୁଭୂତ ହେଲା । ତତ୍‌କାଳୀନ ରାଜଧାନୀ କଟକ ଥିଲା ଏହାର ନାଭିକେନ୍ଦ୍ର । ୧୯୩୮ ଫେବୃଆରୀରେ ମୁସଲିମ୍ ଲିଗ୍‌ର ଓଡ଼ିଶା ଶାଖା କଟକରେ ଖୋଲିଲା । ୧୯୩୮ ମେ ୨୦-୨୧ ତାରିଖରେ, ବଙ୍ଗଳାର ମୁଖ୍ୟମନ୍ତ୍ରୀ ଫଜଲୁଲ୍ ହକ୍ କଟକରେ ଆୟୋଜିତ ମୁସଲିମ୍ ଛାତ୍ର ସମ୍ମିଳନୀକୁ ସମ୍ବୋଧନ କରି ଦୃଢ଼ ସଙ୍ଗଠନ ଗଢ଼ିବା ପାଇଁ ଆହ୍ୱାନ ଦେଲେ । ଡିସେମ୍ବରରେ ସାଲେପୁରଠାରେ ଜାମାଏତ-ଉଲ୍-ଉଲେମାର ଏକ ବୈଠକ ବସିଲା । ୧୯୪୦ ଜାନୁଆରୀ ୨୪ରେ ହିନ୍ଦୁ ମହାସଭା ମଧୁପୁର ରାଜାଙ୍କ

ସଭାପତିତ୍ୱରେ ପୁରୀରେ ଏକ ଶାଖା ଖୋଲିଲା । ଏହାର ଠିକ୍ ମାସେ ପରେ ମୁସଲିମ୍ ଲିଗ୍‌ର ଓଡ଼ିଶା ଶାଖା ସର୍ବଭାରତୀୟ ମୁସଲିମ୍ ଲିଗ୍‌ର ଅନ୍ତର୍ଭୁକ୍ତ ହେଲା । (୫୨)

ସେ ସମୟରେ ଯୁଦ୍ଧ ବିରୋଧୀ ଓ ସପକ୍ଷବାଦୀ ରାଜନୀତି ମଧ୍ୟ ଓଡ଼ିଶାରେ ତେଜି ଥିଲା । ଅଖିଳ ଉତ୍କଳ ହିନ୍ଦୁ ମହାସଭା, କଂଗ୍ରେସର ଅହିଂସା ନୀତିକୁ ବିରୋଧ କରି ବ୍ରିଟିଶ ସରକାରଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାକୁ ତଥା ହିନ୍ଦୁ ଯୁବକମାନଙ୍କୁ ସୈନ୍ୟ ବାହିନୀରେ ଭର୍ତ୍ତି କରିବା ପାଇଁ ଯୁକ୍ତି ବାଢ଼ିଲା । ୧୯୪୧ ସେପ୍‌ଟେମ୍ବର୍ ୧୫ ତାରିଖରେ କଟକଠାରେ ଆୟୋଜିତ ଏକ ସଭାରେ, ହିନ୍ଦୁ ମହାସଭାର ଜଣେ ବଂଗୀୟ ନେତା ମନମୋହନ ଚୌଧୁରୀ ହିନ୍ଦୁମାନଙ୍କୁ ସେମାନଙ୍କର ସାମରିକ ଶକ୍ତି ବୃଦ୍ଧି ସକାଶେ ରାମସେନା ଓ ମହାବୀର ଦଳକୁ ସୁଦୃଢ଼ କରିବା ପାଇଁ ଆହ୍ୱାନ ଦେଲେ ଓ ହିନ୍ଦୁମାନଙ୍କର ନ୍ୟାଯ୍ୟ ସ୍ୱାର୍ଥ ରକ୍ଷା ପାଇଁ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଜାତୀୟ ହିନ୍ଦୁ ସମର ବାହିନୀର ଶାଖା ଗଢ଼ିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କଲେ । ମୁସଲିମ୍ ଲିଗ୍ ମଧ୍ୟ ସେହି ତାଳରେ କାମ କରୁଥିଲା । ୧୯୪୨ ମେ ୧୫ରେ ସର୍ବଭାରତୀୟ ମୁସଲିମ ପ୍ରତିରକ୍ଷା ସମିତିର ନେତୃବର୍ଗ ନବାବ ଇସ୍‌ମାଇଲ୍ ଖାଁ, ଚୌଧୁରୀ କାଲିକ୍ୱାତ୍ ଜ୍ଞାମନ୍ ଓ ମହମ୍ମଦ ଇସା ଖାଁ କଟକରେ ପହଞ୍ଚି ସହରର ପ୍ରମୁଖ ମୁସଲମାନମାନଙ୍କୁ ଯୋଗାଯୋଗ କଲେ ଓ କଟକରେ ପ୍ରତିରକ୍ଷା ସମିତିର ଏକ ଶାଖା ଖୋଲି ମୁସଲମାନ ଯୁବକମାନଙ୍କୁ ସେଥିରେ ସାମିଲ ହେବା ପାଇଁ ଆହ୍ୱାନ ଜଣାଇଲେ । ମୁସଲମାନମାନଙ୍କୁ ପାକିସ୍ତାନ ଗଠନ ବିଷୟରେ ବୁଝେଇବା ସଂଗେ ସଂଗେ ସମୁଦାୟର ସ୍ୱାର୍ଥ ରକ୍ଷା ପାଇଁ ମୁସଲିମ୍ ଲିଗ୍‌ର ଏକ ଶାଖା ଖୋଲିବା ପାଇଁ ପ୍ରବର୍ତ୍ତାଇଲେ । ଏହି ସମୟରେ ହିନ୍ଦୁ ମହାସଭା ବି କମ୍ ସକ୍ରିୟ ନ ଥିଲା । ୧୯୪୩ ସେପ୍‌ଟେମ୍ବର-ଅକ୍ଟୋବର ମାସରେ ମହାସଭାର ସାଂଗଠନିକ ସଂପାଦକ ସଦାଶିବ ନନ୍ଦଶର୍ମା ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତ କରି ହିନ୍ଦୁମାନଙ୍କୁ ସଂଗଠିତ ହେବାପାଇଁ ତଥା ନିଜର ଧାର୍ମିକ, ରାଜନୈତିକ ଓ ସାଂସ୍କୃତିକ ଅଧିକାର ଜାହିର କରିବା ପାଇଁ ଆହ୍ୱାନ ଦେଲେ । ୧୯୪୪ ମେ ମାସରେ ଅଖିଳ ଭାରତୀୟ ହିନ୍ଦୁ ଧର୍ମ ସେବା ସଂଘ ପୁରୀରେ ଗଠିତ ହେଲା (୫୩) । ସୈନ୍ୟବାହିନୀରେ ବହୁ ସଂଖ୍ୟାରେ ଭର୍ତ୍ତି ହେବା ପାଇଁ, ସଂଘ ହିନ୍ଦୁ ଯୁବକମାନଙ୍କୁ ଡାକରା ଦେଲା, "ଯେପରିକି ସାମରିକ ସଫଳତାରେ ସେମାନେ ମୁସଲମାନମାନଙ୍କ ସହ ସମକକ୍ଷ ହୋଇପାରିବେ ।" ଛୁଆଁ ଅଛୁଆଁ ଭେଦଭାବର ବିଲୋପ ତଥା ଧର୍ମାନ୍ତରିତ ହୋଇଥିବା ହିନ୍ଦୁମାନଙ୍କୁ ପୁଣି ହିନ୍ଦୁ ଧର୍ମ ଗ୍ରହଣ କରିବା ସପକ୍ଷରେ ଏହା ଯୁକ୍ତି ବାଢ଼ିଲା (୫୪) ।

କଂଗ୍ରେସକୁ ହିନ୍ଦୁମାନଙ୍କର ସଂଗଠନ କହି, ୧୯୪୬ ମସିହା ଅଗଷ୍ଟ ୧୬ ତାରିଖରେ କେତେକ ମୁସଲମାନ କଟକରେ ପ୍ରତ୍ୟକ୍ଷ କାର୍ଯ୍ୟ ଦିବସ (ଡାଇରେକ୍ଟ ଆକ୍‌ସନ୍ ଡେ)

ପାଳନ କଲେ । କ୍ୟାବିନେଟ୍ ମିଶନ୍ ଯୋଜନାକୁ ବିରୋଧ କରି ଓଡ଼ିଶାରେ ବିଭିନ୍ନ ପଦପଦବୀ ଧାରଣ କରିଥିବା ମୁସଲମାନମାନେ ସେଗୁଡ଼ିକୁ ପରିତ୍ୟାଗ କରିବା ପାଇଁ ସଭାରେ ଆହ୍ବାନ ଦିଆଯାଇଥିଲା । ଜିନ୍ନାଙ୍କୁ ସମର୍ଥନ କରି ମୁସଲିମ ଲିଗ୍ ସମ୍ବଲପୁର ଓ ବାଲେଶ୍ୱରଠାରେ ସଭା ଓ ଶୋଭାଯାତ୍ରାର ଆୟୋଜନ କଲା । ୧୯୪୬ ସେପ୍ଟେମ୍ବର ୧୬-୧୭ରେ ଅନୁଷ୍ଠିତ କାର୍ଯ୍ୟକାରୀ କମିଟି ବୈଠକରେ, ଦଙ୍ଗା କ୍ଷତିଗ୍ରସ୍ତ ମୁସଲମାନମାନଙ୍କ ପାଇଁ ରିଲିଫ୍ ଓ ଥଇଥାନର ବନ୍ଦୋବସ୍ତ କରିବା ପାଇଁ ବିହାର ସରକାରଙ୍କଠାରେ ଦାବି କରାଗଲା ଏବଂ କ୍ଷତିଗ୍ରସ୍ତ ଲୋକମାନଙ୍କ ପାଇଁ ଚାନ୍ଦା ସଂଗ୍ରହ କରାଗଲା । ୧୯୪୬ ଅକ୍ଟୋବରରେ କଲିକତା ଓ ପୂର୍ବ ବଙ୍ଗର ଦଙ୍ଗା ପରେ ପରିସ୍ଥିତି ଆହୁରି ଉତ୍ତେଜକ ହୋଇପଡ଼ିଲା । ଓଡ଼ିଶାର କେତେକ ହିନ୍ଦୁ ଗାଁଗାଁରେ ପ୍ରତିରକ୍ଷା ସମିତି ଓ ହିନ୍ଦୁ ସମର ବାହିନୀ ଗଠନ ପାଇଁ ପ୍ରସ୍ତାବ ରଖିଲେ । 'ଜାତିର ଡ଼ାକ' ନାଁରେ ଏକ ପ୍ରଚାରପତ୍ର ଛପାଯାଇ କଟକରେ ବଣ୍ଟାଗଲା ଏବଂ 'ମୁସଲମାନମାନଙ୍କୁ ସବୁପ୍ରକାରେ ବାସନ୍ଦ କରିବାପାଇଁ ଆହ୍ବାନ ଦିଆଗଲା । ଫଳରେ ମୁସଲିମମାନମାନଙ୍କ ଭିତରେ ଭୟ ଖେଳିଗଲା । ନୂଆଖାଲି ଦଙ୍ଗାକୁ ବିରୋଧ କରି ଓଡ଼ିଶାର ଅଧିକାଂଶ ସ୍ଥାନରେ ହିନ୍ଦୁମାନେ ପାରଂପରିକ ଉଲ୍ଲାସ ସହ ଦୀପାବଳୀ ପାଳନ କଲେ ନାହିଁ ବରଂ କେତେକ ସ୍ଥାନରେ ହରତାଳ କଲେ । କେତେକ ହିନ୍ଦୁ ଓଡ଼ିଶାର ମୁସଲମାନମାନଙ୍କୁ ଆହ୍ବାନ ଦେଲେ ଯେ ସେମାନେ ବଙ୍ଗଳାର ମୁସଲମାନମାନଙ୍କୁ ଦଙ୍ଗାରୁ ନିବୃତ୍ତ ରହିବା ପାଇଁ ଅନୁରୋଧ କରନ୍ତୁ, ନଚେତ୍ ଓଡ଼ିଶାରେ ଏହାର ପରିଣାମ ଭୟାନକ ହେବ, କାରଣ ଓଡ଼ିଶାରେ ମୁସଲମାନମାନେ ସଂଖ୍ୟାଲଘୁ (୫୫)। ୧୯୪୭ରେ 'ପାକିସ୍ତାନ ପାଣ୍ଠି' ଗଠନ ତଥା ନିଜର ଏକ ପ୍ରେସ୍ ବସାଇବା ପାଇଁ ୨୦ ହଜାର ଟଙ୍କା ସଂଗ୍ରହ ପାଇଁ ଓଡ଼ିଶାର ମୁସଲିମ ଲିଗ୍ ନିଷ୍ପତ୍ତି ନେଲା । ଆହୁରି ମଧ୍ୟ ଓଡ଼ିଶାରୁ ବିଧେୟକ ସଭାକୁ ଯାଇଥିବା ସଭ୍ୟମାନଙ୍କୁ ନିଜର ସମସ୍ୟା ବିଷୟରେ ଅବଗତ କରେଇବା ପାଇଁ ଏକ କମିଟି ସ୍ଥାପନା କଲା ।

ଏହା ସ୍ପଷ୍ଟ ଯେ ଓଡ଼ିଶାରେ ଦେଖାଦେଇଥିବା ହିନ୍ଦୁ-ମୁସଲମାନ ଉତ୍ତେଜନା ଓଡ଼ିଶା ବାହାରର ସାଂପ୍ରଦାୟିକ ପରିସ୍ଥିତିର ଏକ ପ୍ରତିକ୍ରିୟା ଥିଲା । ଅନ୍ୟ ରାଜ୍ୟ ଭଳି ଓଡ଼ିଆମାନେ ମୋଟାମୋଟି ସାଂପ୍ରଦାୟିକ ବିଦ୍ୱେଷ ବା ଦଙ୍ଗାଗୋଳରୁ ବିରତ ଥିଲେ । କେତେକ ସ୍ଥାନରେ, ସ୍ଥାନୀୟ ସାମାଜିକ-ଅର୍ଥନୈତିକ କାରଣ ଯୋଗୁଁ ଉତ୍ତେଜନା ଦେଖାଦେଇଥିଲା । ଉଦାହରଣସ୍ୱରୂପ, ୧୯୪୩ ଦୁର୍ଭିକ୍ଷ ସମୟରେ ଭଦ୍ରଖରେ ହିନ୍ଦୁ ଜମିଦାର ଏବଂ ମୁସଲମାନ ମଜୁରିଆମାନଙ୍କ ମଧ୍ୟରେ ଗୋଳ ସୃଷ୍ଟିହୋଇଥିଲା । ଫଳରେ, 'ହିନ୍ଦୁ' ଶୋଭାଯାତ୍ରାକୁ ବାଧା ଦେଉଥିବା 'ମୁସଲମାନ' ଗହଳି ଉପରେ ପୁଲିସ ଗୁଳି ଚଳେଇଲା (୫୬)। ଅଧିକଂତୁ, ସବୁ ମୁସଲମାନମାନେ ସାଂପ୍ରଦାୟିକ ରାଜନୀତିର ସମର୍ଥକ ନ

ଥିଲେ। ୧୯୩୯ ଜୁନରେ ବାଲେଶ୍ୱରରେ ମୁସଲିମ ୟଙ୍ଗ୍ ମ୍ୟାନ୍ସ ଅର୍ଗାନାଇଜେସନ୍, "ଆବଶ୍ୟକସ୍ଥଳେ କମ୍ୟୁନିଷ୍ଟମାନଙ୍କୁ ସାହାଯ୍ୟ କରିବା ପାଇଁ" ଗଠିତ ହୋଇଥିଲା । ୧୯୪୦ ଏପ୍ରିଲ ୪ରେ କଟକରେ ଆୟୋଜିତ ଏକ ସଭାରେ 'ଜାତୀୟତାବାଦୀ' ମୁସଲମାନମାନେ ଜିନ୍ନାଙ୍କର ସାଂପ୍ରଦାୟିକ ନୀତିକୁ ନିନ୍ଦା କରିବା ସହ କଂଗ୍ରେସ ପ୍ରତି ନିଜର ସମର୍ଥନ ଜଣାଇଥିଲେ (୫୭)। ସେହିଭଳି, ହିନ୍ଦୁ ସମୁଦାୟର ଏକ ବଡ଼ ଭାଗ ହିନ୍ଦୁ ମହାସଭାର ସାଂପ୍ରଦାୟିକ ରାଜନୀତିକୁ ପରିହାର କରିଥିଲେ। ଫଳରେ ସାମୟିକ ସାଂପ୍ରଦାୟିକ ଉତ୍ତେଜନା ସତ୍ତ୍ୱେ 'ଓଡ଼ିଶାର ପବିତ୍ର ମାଟିରେ ବିନ୍ଦୁଏ ବି ମଣିଷ ରକ୍ତ ଝରି ନ ଥିଲା' (୫୮)।

## ଓଡ଼ିଶାରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ

ନବ ଗଠିତ ଓଡ଼ିଶା ପ୍ରଦେଶରେ କାର୍ଯ୍ୟ ଆରମ୍ଭ କରିବା ପାଇଁ ଆର୍‌ଏସ୍‌ଏସ୍ ଚାହିଁ ବସିଥିଲା । କିନ୍ତୁ ପଶ୍ଚିମ, ଉତ୍ତର-ପଶ୍ଚିମ ଓ ଉତ୍ତର-ଭାରତରେ ବ୍ୟସ୍ତତା ହେତୁ, ଓଡ଼ିଶାରେ ପୂରା ମାତ୍ରାରେ କାର୍ଯ୍ୟ ଆରମ୍ଭ କରିବା ପାଇଁ ଅଧିକ ସଂଖ୍ୟକ ପ୍ରଚାରକ ମିଳୁ ନ ଥିଲେ । ଏଣୁ ନିଜର ସଂଗଠନ ଦୃଷ୍ଟିରୁ ଆର୍‌ଏସ୍‌ଏସ୍ ଓଡ଼ିଶାକୁ ସେ ସମୟରେ ଏକ ସ୍ୱତନ୍ତ୍ର 'ପ୍ରାନ୍ତ' ହିସାବରେ ଗଣୁ ନ ଥିଲା । ତଥାପି, ଚାଳିଶ ଦଶକରେ ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ ବିହାର ସୀମାକୁ ଲାଗିଥିବା ଓଡ଼ିଶାର ଇଲାକାମାନଙ୍କରେ ସେସବୁ ପ୍ରଦେଶର ସଂଘ କର୍ମକର୍ତ୍ତାମାନେ କାର୍ଯ୍ୟ ଆରମ୍ଭ କରିଥିଲେ (୫୯)। ସମ୍ବଲପୁରରେ ଅନନ୍ତ ଶ୍ରୀବାସ୍ତବ ଏବଂ ଗଞ୍ଜାମରେ ପୂର୍ଣ୍ଣାନନ୍ଦ ସ୍ୱାମୀ ଶାଖା ସ୍ଥାପନ କଲେ । କଟକରେ ଶାଖା କାର୍ଯ୍ୟ ଆରମ୍ଭ କରିବା ପାଇଁ ବି. ଏସ୍. ମୁଂଜେଙ୍କ ସଂପର୍କୀୟ ମୁକୁନ୍ଦ ରାଓ ମୁଂଜେ ବିଳାସପୁରରୁ ଆସିଲେ । ମହାତ୍ମାଗାନ୍ଧୀଙ୍କ ହତ୍ୟା ପରେ ଆର୍‌ଏସ୍‌ଏସ୍ ନିଷିଦ୍ଧ ହେବା ହେତୁ ଏସବୁ ପ୍ରାରମ୍ଭିକ କାର୍ଯ୍ୟରେ ଏକପ୍ରକାର ଚଡ଼କ ପଡ଼ିଲା । ଦେଶ ସାରା ଆର୍‌ଏସ୍‌ଏସ୍ କର୍ମୀମାନଙ୍କୁ ଗିରଫ କରାଗଲା । ଫଳରେ ଓଡ଼ିଶାରେ ଆର୍‌ଏସ୍‌ଏସ୍ ପ୍ରତି ସହାନୁଭୂତି ଥିବା ବ୍ୟକ୍ତିମାନଙ୍କ ଭିତରେ ଭୟ ପଶିଲା। ଏପରିକି କେତେ ଜଣ ସକ୍ରିୟ କର୍ମୀ ସଂଗଠନ ସହ ସଂପର୍କ ଛିନ୍ନ କଲେ ।

୧୯୪୯ରେ ନିଷେଧାଦେଶ ଉଠିବା ପରେ, ଆର୍‌ଏସ୍‌ଏସ୍ ତୁରନ୍ତ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରାନ୍ତର ମାନ୍ୟତା ଦେଲା ଓ ଗୋଲ୍‌ୱାଲ୍‌କର୍ ବାବୁରାଓ ପାଲଧିକରଙ୍କୁ ପ୍ରଥମ ପ୍ରାନ୍ତ ପ୍ରଚାରକ କରି ଓଡ଼ିଶା ପଠେଇଲେ (୬୦)। ପାଲଧିକର ଆସିବାବେଳକୁ ଓଡ଼ିଶାରେ ବସ୍ତୁତଃ ଆର୍‌ଏସ୍‌ଏସ୍‌ର କିଛି ବି ସଂଗଠନ ନ ଥିଲା । ପାଲ୍‌ଧିକର ଓଡ଼ିଶାର ରାଜନୈତିକ ଓ ଅର୍ଥନୈତିକ କେନ୍ଦ୍ର କଟକରେ ପହଞ୍ଚିଲେ ଏବଂ ସେହି ସହରରେ ହିଁ ନିଜ କାର୍ଯ୍ୟକଳାପ ଜାରି ରଖିଲେ । ଜାଉଁଳିଆ ପଟି ମାରୱାଡ଼ି ବାସାରେ ଘରଟିଏ ଭଡ଼ା ନେଇ, ପାଲଧିକର କଟକରେ ଡେରା ପକାଇଲେ। ଆର୍‌ଏସ୍‌ଏସ୍ ପ୍ରତି ସହାନୁଭୂତିଶୀଳ କେତେକ ଅଣ-ଓଡ଼ିଆ ବ୍ୟବସାୟୀଙ୍କ ସହ ମୁକୁନ୍ଦ ରାଓ, ମୁଂଜେ ତାଙ୍କର ପରିଚୟ କରାଇଦେଲେ। ମାଣିକ

ଘୋଷ ବଜାରସ୍ଥିତ ମାଗୁଣ୍ଡ୍ରେଡ଼ି କ୍ଲବ୍ ପଡ଼ିଆରେ ପାଲଧିକର ପ୍ରାତଃକାଳୀନ ଶାଖା ଆରମ୍ଭ କଲେ।

# ହିନ୍ଦୁତ୍ୱର ପ୍ରଚାର ଓ ପ୍ରସାର

## ପ୍ରାଥମିକ ରଣକୌଶଳ

ନୂଆ ଜାଗାରେ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିଙ୍କ ମାଧ୍ୟମରେ ନିଜର ସଂପର୍କ ଓ ପ୍ରଭାବ ବିସ୍ତାର କରିବା ସଂଘର ଏକ ପୁରୁଣା ରଣକୌଶଳ (୬୧)। ଓଡ଼ିଶାରେ ପାଲଧିକର ତାହା ହିଁ ପ୍ରୟୋଗ କଲେ। ପ୍ରଥମେ ଯାଇ ନୀଳକଣ୍ଠ ଦାସଙ୍କୁ ଭେଟିଲେ। ନୀଳକଣ୍ଠ ଦାସ ସେ ସମୟର ଜଣେ ପ୍ରଭାବଶାଳୀ ରାଜନୈତିକ ବ୍ୟକ୍ତିତ୍ୱ। ସେ ଦୁଇ ଦଶନ୍ଧି (୧୯୨୪-୪୫)ଧରି କେନ୍ଦ୍ରୀୟ ବିଧାନସଭାର ସଭ୍ୟ ରହିଥିଲେ। ନୀଳକଣ୍ଠ ଦାସ ପ୍ରଥମେ ଯଦିଓ ଦୋଦୋପାଞ୍ଚ ହେଲେ, କିନ୍ତୁ ତାଙ୍କୁ ଆର୍‌ଏସ୍‌ଏସ୍‌ର ଲକ୍ଷ୍ୟ ସଂପର୍କରେ ବୁଝାଇବାକୁ ପାଲଧିକର ସମର୍ଥ ହେଲେ। ଦ୍ୱିତୀୟରେ ସେ ଭେଟିଲେ ଖ୍ୟାତନାମା ଶିକ୍ଷାବିତ୍ ଓ ପୂର୍ବତନ ମନ୍ତ୍ରୀ ଗୋଦାବରୀଶ ମିଶ୍ରଙ୍କୁ। ଆର୍‌ଏସ୍‌ଏସ ପ୍ରତି ତାଙ୍କର ଦୁର୍ବଳତା ଥିବାର ପାଲଧିକର ଲକ୍ଷ୍ୟ କଲେ। ଗୋଦାବରୀଶ ଓଡ଼ିଶାର ଶିକ୍ଷାବିତ୍ ଓ ଓକିଲମାନଙ୍କର ଏକ ଲମ୍ବା ତାଲିକା ତାଙ୍କୁ ଦେଲେ (୬୨)। ତାଲିକା ଅନୁସାରେ, ସେ ଯଦୁମଣି ମଙ୍ଗରାଜ, ଲକ୍ଷ୍ମୀନାରାୟଣ ସାହୁ ଓ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟିଲେ। ସମସ୍ତେ ଆର୍‌ଏସ୍‌ଏସ୍ ପ୍ରତି ଅନୁକୂଳ ମନୋଭାବ ପୋଷଣ କରୁଥିବାର ସେ ଲକ୍ଷ୍ୟକଲେ। ଏମାନଙ୍କ ମଧ୍ୟରୁ କେହି ବି ଗାନ୍ଧୀ ହତ୍ୟା ପାଇଁ ନାଥୁରାମ ଗଡ଼ସେ ଦାୟୀ ବୋଲି ଭାବୁ ନ ଥିଲେ। ବରଂ ମଙ୍ଗରାଜଙ୍କ ଆଚରଣ ତାଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା। ମଙ୍ଗରାଜ କହୁଥିଲେ: 'ଗଡ୍‌ସେ'ର ଅର୍ଥ ଗଡ୍ ସେ (ଭଗବାନଙ୍କଠାରୁ ଆସିଥିବା ବ୍ୟକ୍ତି)। (୬୩)

ଓଡ଼ିଶାର ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କର ଆର୍‌ଏସ୍‌ଏସ୍ ପ୍ରତି ସହୃଦୟତାର କାରଣ କ'ଣ? ସମ୍ଭବତଃ ସେମାନଙ୍କର ସାମାଜିକ-ରାଜନୈତିକ ପୃଷ୍ଠଭୂମି ସେମାନଙ୍କୁ ପ୍ରଭାବିତ କରିଥିଲା। ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ପୁରୀ ଜିଲ୍ଲାର ଶକ୍ତିଶାଳୀ ବ୍ରାହ୍ମଣ ସମ୍ପ୍ରଦାୟରୁ ଆସିଥିଲେ; ମଙ୍ଗରାଜ ଖଣ୍ଡାୟତ ସଂପ୍ରଦାୟରୁ (୬୪) ଓ ସାହୁ ସ୍ଥାନୀୟ ପାରଙ୍ଗମ ବ୍ୟବସାୟୀ ସଂପ୍ରଦାୟରୁ। ଏମାନେ ସମସ୍ତେ ବି ଅସନ୍ତୁଷ୍ଟ କଂଗ୍ରେସ ଶିବିରର ଲୋକ ଥିଲେ। ନୀଳକଣ୍ଠ ଓ ଗୋଦାବରୀଶ ସ୍ୱରାଜ ଦଳରେ ଥିଲେ ଏବଂ ହିନ୍ଦୁ ମହାସଭା ସହ ସଂପର୍କ ରଖିଥିଲେ। ଗାନ୍ଧୀଜୀଙ୍କ ଅହିଂସା ନୀତି ବିରୋଧରେ ପ୍ରଚାର କରିବା ଏବଂ ବ୍ରିଟିଶ ସରକାରକୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଯୁକ୍ତି ବାଢ଼ିବା ହେତୁ ୧୯୪୧ରେ ନୀଳକଣ୍ଠ ଦାସଙ୍କୁ କଂଗ୍ରେସରୁ ବହିଷ୍କାର କରିଦିଆଯାଇଥିଲା (୬୫)। ସୁବାଷ ବୋଷଙ୍କ ଉପଦେଶ କ୍ରମେ ମୁସଲିମ ଲିଗ୍ ସହିତ ମିଶି, ୧୯୪୧ରେ ଓଡ଼ିଶାରେ ମିଳିତ ସରକାର

ଗଠନ କରିବାରେ ତାଙ୍କର ହାତ ଥିଲା (୬୬) । ନୀଳକଣ୍ଠ ଓ ଗୋଦାବରୀଶ ବୁଲି ବୁଲି ଯୁଦ୍ଧ ପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରୁଥିଲେ । ୧୯୪୩ରେ ନୀଳକଣ୍ଠ ଉତ୍କଳ ପ୍ରାଦେଶିକ ହିନ୍ଦୁ ମହାସଭାର ସଭାପତି ଭାବେ ନିର୍ବାଚିତ ହୋଇଥିଲେ (୬୭) ଏବଂ ସ୍ୱରାଜ ପାର୍ଟିର ଓଡ଼ିଶା ଶାଖାକୁ ହିନ୍ଦୁ ମହାସଭାରେ ମିଶାଇବାର ଅସଫଳ ଚେଷ୍ଟା କରିଥିଲେ । ୧୯୪୪ରେ କଂଗ୍ରେସ ରାଜଗୋପାଳଚାରୀଙ୍କ ହିନ୍ଦୁ-ମୁସଲିମ ଏକତା ପ୍ରସ୍ତାବକୁ ଯେତେବେଳେ ସମର୍ଥନ ଜଣାଇଲା, ସେତେବେଳେ ଓଡ଼ିଶାରୁ ଯେଉଁ କେତେ ଜଣ ବିଶିଷ୍ଟ ବ୍ୟକ୍ତି ତା'ର ବିରୋଧ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ନୀଳକଣ୍ଠ ଦାସ ଓ ଲକ୍ଷ୍ମୀନାରାୟଣ ସାହୁ । (୬୮)

ଆର୍‌ଏସ୍‌ଏସ୍‌ର ଶୈଶବରେ ନୀଳକଣ୍ଠ ଏହାକୁ ବହୁ ଭାବରେ ସାହାଯ୍ୟ କରିଥିଲେ । କଟକର ବାଙ୍କା ବଜାରରେ ଥିବା ତାଙ୍କ ନବଭାରତ ପ୍ରେସ ହତାରେ ଆର୍‌ଏସ୍‌ଏସ୍‌କୁ ଶାଖା ଚଳେଇବା ପାଇଁ ଅନୁମତି ଦେଇଥିଲେ । ପ୍ରତିବଦଳରେ, ୧୯୫୦ ମସିହା ଅକ୍‌ଟୋବରରେ ନାଗପୁରଠାରେ ଅନୁଷ୍ଠିତ ହୋଇଥିବା ଆର୍‌ଏସ୍‌ଏସ୍‌ର ବିଜୟା ଦଶମୀ ଉତ୍ସବରେ ସଭାପତିତ୍ୱ ପରିବା ପାଇଁ ସେ ନିମନ୍ତ୍ରିତ ହୋଇଥିଲେ । ଆର୍‌ଏସ୍‌ଏସ୍ ଦୃଷ୍ଟିରୁ, ଦୁଇଟି କାରଣ ପାଇଁ ଏହା ଗୁରୁତ୍ୱପୂର୍ଣ୍ଣ ଥିଲା: ପ୍ରଥମତଃ, ନିଷେଧାଦେଶ ଉଠିବା ପରେ, ଜଣେ ବିଶିଷ୍ଟ କଂଗ୍ରେସ ନେତାଙ୍କର ଆର୍‌ଏସ୍‌ଏସ୍‌ର ମୁଖ୍ୟ ଉତ୍ସବରେ ଅଂଶଗ୍ରହଣ ଗାନ୍ଧୀ ହତ୍ୟା ଜନିତ କଳଙ୍କ କିଛିଟା ଧୋଇବାରେ ସାହାଯ୍ୟ କରିବ ଓ ଦ୍ୱିତୀୟରେ ଜଣେ ବିଶିଷ୍ଟ ଓଡ଼ିଆଙ୍କ ସହ ଘନିଷ୍ଠତା ହେତୁ ତାଙ୍କର ସାମାଜିକ-ରାଜନୈତିକ ପରିଚୟରୁ ରାଜ୍ୟରେ ସଂଘକୁ ଫାଇଦା ମିଳିବ । ନୀଳକଣ୍ଠ ଦାସ ଆର୍‌ଏସ୍‌ଏସ୍‌ର ନିମନ୍ତ୍ରଣ ଗ୍ରହଣ କଲେ ଏବଂ ଖୋଦ୍ ଗୋଲ୍‌ୱାଲ୍‌କର୍ ତାଙ୍କର ସମ୍ମାନିତ ବକ୍ତାଙ୍କୁ ପାଛୋଟି ନେବାକୁ ନାଗପୁର ଷ୍ଟେସନକୁ ଆସିଥିଲେ । ନୀଳକଣ୍ଠଙ୍କ ଭାଷଣ ଆର୍‌ଏସ୍‌ଏସ୍ ପାଇଁ ବେଶ୍ ପ୍ରେରଣାଦାୟକ ଥିଲା (୬୯) । ସେ କହିଥିଲେ, ହିନ୍ଦୁ ଶବ୍ଦ ସାଂପ୍ରଦାୟିକ ଅର୍ଥ ବହନ କରେ ନାହିଁ । ଏହା ଆର୍ଯ୍ୟ ଶବ୍ଦର ପ୍ରତିଶବ୍ଦ; ଯାହାର ଅର୍ଥ ଶ୍ରେଷ୍ଠ । 'ଯାହା ଜୀବନରେ ଭଲ ଓ ମହତ୍ତର' ସେସବୁକୁ ଏହି ହିନ୍ଦୁ ଶବ୍ଦ ପ୍ରତିପାଦିତ କରେ । ସେ କହିଥିଲେ, "ଆମେ ନିଜକୁ ହିନ୍ଦୁ କହିବାରେ ଲଜ୍ଜିତ ହେବାର କୌଣସି କାରଣ ନାହିଁ ।" ଶ୍ରୋତାମାନଙ୍କୁ ମନେ ପକାଇଦେଇ ସେ କହିଲେ, ନାଗପୁରର ଭୋଁସଲା ଉତ୍କଳ ପ୍ରଦେଶକୁ 'ବିଦେଶୀ ଆକ୍ରମଣକାରୀମାନଙ୍କଠାରୁ ରକ୍ଷା କରିଥିଲେ ।' "ନାଗପୁରରେ ଜନ୍ମଗ୍ରହଣ କରିଥିବା ଆର୍‌ଏସ୍‌ଏସ୍ ଏଥର କେବଳ ଉତ୍କଳ ପ୍ରଦେଶ ନୁହଁ, ସମଗ୍ର ଭାରତବର୍ଷର ଉଦ୍ଧାରକର୍ତ୍ତା ହେବ" (୭୦)- ଏହା ଥିଲା ଦାସଙ୍କର ଭବିଷ୍ୟବାଣୀ । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ବିବାଦୀୟ ମରହଟ୍ଟା ଶାସନ ବିଷୟରେ ସଂକ୍ଷେପରେ ବର୍ଣ୍ଣନା କରିବା ସମୀଚୀନ ହେବ ।

ଔପନିବେଶିକ ଇତିହାସ ମରହଟ୍ଟାମାନଙ୍କର କୁଶାସନ, ଅତ୍ୟାଚାର, ରକ୍ତପାତ ସଂପର୍କରେ ଉଲ୍ଲେଖ କରେ ଏବଂ ମରହଟ୍ଟାମାନଙ୍କ ଉତ୍‌ଥାନକୁ ଏକ 'ମହାବିପତ୍ତି' ବୋଲି ବର୍ଣ୍ଣନା କରେ (୭୧)। ମାଦଳାପାଞ୍ଜିରେ କିନ୍ତୁ ଏ ବିଷୟରେ କିଛି ଉଲ୍ଲେଖ ନାହିଁ। ବରଂ ମରହଟ୍ଟାମାନଙ୍କର ଜଗନ୍ନାଥ ମନ୍ଦିରକୁ ଦେଇଥିବା ଦାନ ଦକ୍ଷିଣା ତଥା ଖୋର୍ଦ୍ଧା ରାଜାଙ୍କୁ ସାହାଯ୍ୟ କରିବା ବିଷୟ ଏଥିରେ ଉଲ୍ଲେଖ ଅଛି। ଷ୍ଟେଟନ୍‌କ୍ରନ୍‌ଙ୍କ ମତରେ, ମରହଟ୍ଟାମାନେ ଓଡ଼ିଶାରେ ହିନ୍ଦୁ ସଂସ୍କୃତିର ପୁନଃଅଭ୍ୟୁତ୍‌ଥାନ ପାଇଁ ଜୋରଦାର ପୃଷ୍ଠପୋଷକତା କରିଥିଲେ (୭୨)। ଏହା ଲକ୍ଷ୍ୟ କରିବାର ବିଷୟ, ଓଡ଼ିଶାରେ ସମାଜବାଦୀ ଓ ଆର୍‌ଏସ୍‌ଏସ୍ ବିତର୍କରେ ମରହଟ୍ଟା ଶାସନ ବିଷୟ ସମୟ ସମୟରେ ଦେଖାଦିଏ ଆର୍‌ଏସ୍‌ଏସ୍ ମୋଗଲ୍‌ମାନଙ୍କର ଧର୍ମାନ୍ଧତା ବିଷୟରେ କହିଲା ବେଳେ ସମାଜବାଦୀମାନେ ସେମାନଙ୍କୁ ବର୍ଗୀମାନଙ୍କର ଆତଙ୍କରାଜ ବିଷୟରେ ମନେ ପକାଇ ଦିଅନ୍ତି, ଯାହା ଓଡ଼ିଶାର ଜନମାନସରେ ଏବେ ବି ଜୀବନ୍ତ। (୭୩)

ଆର୍‌ଏସ୍‌ଏସ୍‌ର ବିଜୟା ଦଶମୀ ଉତ୍ସବରେ ଅଧ୍ୟକ୍ଷତା କରିଥିବା ଅନ୍ୟତମ ବିଶିଷ୍ଟ ଓଡ଼ିଆ ହେଲେ ବୈଜ୍ଞାନିକ ତଥା ଶିକ୍ଷାବିତ୍ ହିସାବରେ ସୁପରିଚିତ ପ୍ରାଣକୃଷ୍ଣ ପରିଜା। ସେ ଓ ଗୋଲ୍‌ଓ୍ୱାଲ୍‌କର୍, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ର ଥିଲେ। ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ସେ ଆର୍‌ଏସ୍‌ଏସ୍‌କୁ ପରିଚିତ କରାଇଥିଲେ। ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ଓଡ଼ିଶା ଗସ୍ତ ସମୟରେ ପରିଜା ନିଜ ବାସଭବନରେ ଗୋଟିଏ ସଭାର ଆୟୋଜନ କରିଥିଲେ, ଯେଉଁଠି ଓଡ଼ିଶାର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ସହିତ ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ଭାବ ବିନିମୟ ହୋଇଥିଲା (୭୪)। ବିଜୟା ଦଶମୀ ଉତ୍ସବରେ ଅଧ୍ୟକ୍ଷତା କରିଥିବା ତୃତୀୟ ବ୍ୟକ୍ତି ହେଲେ ଜଣେ ସୁପରିଚିତ କଂଗ୍ରେସ ନେତା ଦୀନବନ୍ଧୁ ସାହୁ।

## ସଂଗଠନ ନିର୍ମାଣ

ମାନ୍ୟଗଣ୍ୟ ଓଡ଼ିଆ ତଥା ମାରୁଓ୍ୱାଡ଼ି ବ୍ୟବସାୟୀଙ୍କ ସହ ଯୋଗସୂତ୍ର ଛଡ଼ା, ପାଲଧିକର ଓଡ଼ିଶାର ବ୍ୟାପକ ଅଂଚଳ ଗସ୍ତ କରି ଶାଖା ମାନ ଖୋଲିଲେ। ନିଜେ ମୁଖ୍ୟ କେନ୍ଦ୍ର କଟକର ପରିଚାଳନା ଦାୟିତ୍ୱରେ ରହି, କାର୍ଯ୍ୟଦକ୍ଷ ଅଣ-ଓଡ଼ିଆ, ବିଶେଷକରି ମରାଠୀ ପ୍ରଚାରକମାନଙ୍କୁ ବିଭିନ୍ନ ସ୍ଥାନରେ ନିଯୁକ୍ତ କଲେ; ଯଥା: ବାଲେଶ୍ୱରରେ ସଦାନନ୍ଦ ପଣ୍ଡଓ୍ୱାନେ, ପୁରୀରେ ବସନ୍ତରାଓ ବାପତ, କଟକରେ ବସନ୍ତରାଓ ଅଗରକର, ବରହମପୁରରେ ପ୍ରଭାକର ଶାସ୍ତ୍ରୀ, ବଲାଙ୍ଗୀରରେ ଶ୍ରୀଧର ଆଚାର୍ଯ୍ୟ, ରାଉରକେଲାରେ ନାରାୟଣ ମଣ୍ଡଳ, ସମ୍ବଲପୁରରେ ଚିନ୍ତାମଣି କାଓ୍ୱାଥେକର ଏବଂ ସୁନ୍ଦରଗଡ଼ରେ ବାବୁରାଓ ଦେଶପାଣ୍ଡେ। ଏହି ଉତ୍ସର୍ଗୀକୃତ ପ୍ରଚାରକମାନେ, ସ୍ଥାନୀୟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସହ ଯୋଗାଯୋଗ କରି ଶାଖାମାନ ଖୋଲିଲେ ଏବଂ ବିଭିନ୍ନ ଅଭିନବ କୌଶଳ ପ୍ରୟୋଗ

କରି ନୂଆ ନୂଆ ଯୁବକମାନଙ୍କୁ ଆର୍‌ଏସ୍‌ଏସ୍‌ରେ ଭର୍ତ୍ତି କଲେ (୭୫)।

ଆଦର୍ଶର ପ୍ରଚାର ତଥା ନୂଆ ନୂଆ କର୍ମୀମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଆର୍‌ଏସ୍‌ଏସ୍‌ର ଓଡ଼ିଶା ଶାଖା କେନ୍ଦ୍ରୀୟ ନେତାମାନଙ୍କୁ ଆଣି ଲଗାତର କାର୍ଯ୍ୟକ୍ରମ କରି ଚାଲିଲା। ଗୋଲ୍‌ଓ୍ୱାଲ୍‌କର୍ ପ୍ରତିବର୍ଷ ଓଡ଼ିଶା ଆସିଲେ ଏବଂ ସେହି ଅବସରରେ ରାଜ୍ୟ ଓ ଜିଲ୍ଲାସ୍ତରୀୟ ବିଶିଷ୍ଟ ଲୋକମାନଙ୍କୁ ଯୋଗଯୋଗ କଲେ। ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ଉପସ୍ଥିତି ଆର୍‌ଏସ୍‌ଏସ୍ କର୍ମୀ ଓ ନୂଆକରି ସେଥିରେ ଭର୍ତ୍ତି ହୋଇଥିବା ଯୁବକମାନଙ୍କୁ ପ୍ରେରଣା ଯୋଗାଇଲା। ଦୀନଦୟାଲ ଉପାଧ୍ୟାୟ କଟକ ଟାଉନ୍ ହଲ୍‌ର ଏକ ସଭାକୁ ସମ୍ବୋଧିତ କରିଥିଲେ, ଯେଉଁଥିରେ ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ଉପସ୍ଥିତ ଥିଲେ। ସଭାର ସଭାପତି ଥିଲେ ନୀଳକଣ୍ଠ ଦାସ। ଦୀନ ଦୟାଲଙ୍କ ପତଳା ଚେହେରା ଓ ଯୁବ ବୟସ ନୀଳକଣ୍ଠଙ୍କୁ ଯଦିଓ ପ୍ରଭାବିତ କଲା ନାହିଁ ତଥାପି ତାଙ୍କ ଭାଷଣ ଶୁଣି ସେ ଏତେ ମୁଗ୍‌ଧ ହୋଇଗଲେ ଯେ ନିଜ ସଭାପତି ଅଭିଭାଷଣରେ ସେ ଆର୍‌ଏସ୍‌ଏସ୍‌ର ଆଦର୍ଶ ସପକ୍ଷରେ କହିଲେ। ଗୋଦାବରୀଶ ମିଶ୍ର ଧନ୍ୟବାଦ ଅର୍ପଣ କରି ଉପାଧ୍ୟାୟଙ୍କ ବକ୍ତୃତାର ମୁଦ୍ରିତ କପି ଓଡ଼ିଶାର ମାନ୍ୟଗଣ୍ୟ ଲୋକମାନଙ୍କୁ ପଠାଇବାକୁ ପରାମର୍ଶ ଦେଲେ(୭୬)।

୧୯୫୬ରେ ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ଏକାବନତମ ଜନ୍ମଦିବସ ପାଳନ ଅବସରରେ, ଆର୍‌ଏସ୍‌ଏସ୍ ଏକ ୫୧ଦିନିଆ ଜନସଂପର୍କ କାର୍ଯ୍ୟକ୍ରମ ଆରମ୍ଭ କଲା ଏବଂ 'ସଂପର୍କ ନିଧି' ନାଁରେ ସାଧାରଣ ଲୋକଙ୍କ ଠାରୁ ଚାନ୍ଦା ଯୋଗାଡ଼ କଲା। ଏହି ଅବସରରେ ଆର୍‌ଏସ୍‌ଏସ୍‌ର ଓଡ଼ିଶା ଶାଖା ବାରିପଦା ସହରରେ ଆଖିଦୃଶିଆ କାର୍ଯ୍ୟକ୍ରମ କଲା ଯେଉଁଥିରେ ବହୁ ପ୍ରାନ୍ତ ପ୍ରଚାରକ ଏବଂ ପ୍ରାନ୍ତ ସଂଘଚାଳକ ଯୋଗ ଦେଇଥିଲେ ଏବଂ ଲକ୍ଷ୍ମୀନାରାୟଣ ସାହୁ ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ଉପରେ ଏକ ସଂକ୍ଷିପ୍ତ ପୁସ୍ତିକା ଲେଖିଥିଲେ। ସର୍ବଭାରତୀୟ ସ୍ତରରେ ଆର୍‌ଏସ୍‌ଏସ୍ ୪୦ ଲକ୍ଷ ଲୋକଙ୍କ ସହ ସଂପର୍କ ସ୍ଥାପନ କରି ୨୧ ଲକ୍ଷ ଟଙ୍କା ଆଦାୟ କରିଥିଲା; ଓଡ଼ିଶା ଶାଖା ୨୩ ହଜାର ଲୋକଙ୍କ ସହ ସଂପର୍କ ସ୍ଥାପନ କରି ୯,୪୧୭ ଟଙ୍କା ଆଦାୟ କରିଥିଲା(୭୭)। ମାନ୍ୟଗଣ୍ୟ ଓଡ଼ିଆ ଓ ମାରୁଓ୍ୱାଡ଼ି ବ୍ୟବସାୟୀ ଏଥିରେ ବିଶେଷ ସହାୟତା କରିଥିଲେ।

୧୯୬୬ରେ 'ଗୋରକ୍ଷା ଆନ୍ଦୋଳନ'ର ପ୍ରଚାର ଅଭିଯାନ କାର୍ଯ୍ୟକ୍ରମରେ ଆର୍‌ଏସ୍‌ଏସ୍ ସମଗ୍ର ଦେଶରୁ ୨୦ ନିୟୁତ ଦସ୍ତଖତ ସଂଗ୍ରହ କରିଥିଲା ବୋଲି କୁହାଯାଏ। ଓଡ଼ିଶାରେ ନୀଳକଣ୍ଠ ଦାସ ଓ ଅନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଏ କାର୍ଯ୍ୟକ୍ରମରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ଏହି ଦାବିପତ୍ରରେ ପ୍ରଥମ ସ୍ୱାକ୍ଷରକାରୀ ବୋଲି କୁହାଯାଏ। ଉଲ୍ଲେଖଯୋଗ୍ୟ ଯେ ୧୯୬୦ରେ ଓଡ଼ିଶା ସରକାର ଗୋହତ୍ୟା ନିଷେଧ ଆଇନ ପାଶ୍ କରିଥିଲେ। ଓଡ଼ିଶାରେ

ଯେହେତୁ ଗୋମାତା ଭାବେ ଗାଈ ବହୁଳ ଭାବେ ପୂଜିତ, ତେଣୁ ଗୋରକ୍ଷା ସପକ୍ଷରେ ଜନସମର୍ଥନ ଜୁଟେଇବା ସହଜସାଧ୍ୟ ଥିଲା ।

ଏସବୁ କାର୍ଯ୍ୟ ସହ ଆର୍‌ଏସ୍‌ଏସ୍ ଓଡ଼ିଶାରେ ସଂଘ ପରିବାରର ବି ମୂଳଦୁଆ ପକାଇଲା । ୧୯୬୪ରେ ଦୀନଦୟାଲ ଉପାଧ୍ୟାୟ ଝାରସୁଗୁଡ଼ାରେ ଭାରତୀୟ ଜନସଂଘର ଓଡ଼ିଶା ଶାଖା ସ୍ଥାପନ କଲେ । ପୁରୁଖା ପ୍ରଚାରକ ଶ୍ରୀଧର ଆଚାର୍ଯ୍ୟ ଏହାର ସାଂଗଠନିକ ସଂପାଦକ ନିଯୁକ୍ତ ହେଲେ । ନିଜ ଆଦର୍ଶର ପ୍ରଚାର ପାଇଁ ସେହି ବର୍ଷ ଆର୍‌ଏସ୍‌ଏସ୍‌ର ମୁଖପତ୍ର ଓଡ଼ିଆ ସାପ୍ତାହିକୀ 'ରାଷ୍ଟ୍ରଦୀପ' ପ୍ରକାଶ ପାଇଲା । ୧୯୬୬ରେ ପୁରୀରେ ଏକ ରାଜ୍ୟସ୍ତରୀୟ ସମ୍ମିଳନୀ ଆୟୋଜନ କରି ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦର ଓଡ଼ିଶା ଶାଖା ସ୍ଥାପିତ ହେଲା । ଆର୍‌ଏସ୍‌ଏସ୍ ପ୍ରଚାରକ ସରୋଜ ମିତ୍ର ସାଂଗଠନିକ ସଂପାଦକ ନିଯୁକ୍ତ ହେଲେ । ୧୯୬୬ରେ ବିଶ୍ୱ ହିନ୍ଦୁ ପରିଷଦର ପ୍ରଥମ ସମ୍ମିଳନୀ ପ୍ରୟାଗରେ ଅନୁଷ୍ଠିତ ହେଲା । ଓଡ଼ିଶାରୁ ପ୍ରାୟ ୧୦୦ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ବିଶିଷ୍ଟ ଓଡ଼ିଆ, ବରିଷ୍ଠ କଂଗ୍ରେସ ନେତା ତଥା ବେଦ ବିଶାରଦ ଓ ଉତ୍ତରପ୍ରଦେଶର ତତ୍‌କାଳୀନ ରାଜ୍ୟପାଳ ବିଶ୍ୱନାଥ ଦାସ ଏହାର ଉଦ୍‌ଘାଟକ ଥିଲେ । ପୂର୍ବତନ ଗଡ଼ରାଜ ରାଜ୍ୟ ନରସିଂହପୁରର ରାଜମାତା କନକଲତା ଦେବୀଙ୍କ ସଭାପତିତ୍ୱ ଏବଂ ପ୍ରାନ୍ତ କାର୍ଯ୍ୟବାହୀ ଭୂପେନ୍ଦ୍ରକୁମାର ବସୁଙ୍କ ଉପ-ସଭାପତିତ୍ୱରେ ବିଶ୍ୱ ହିନ୍ଦୁ ପରିଷଦର ଓଡ଼ିଶା ଶାଖା ଖୋଲିଲା । ଆର୍‌ଏସ୍‌ଏସ୍ ପ୍ରଚାରକ ରଘୁନାଥ ସେଠୀ ସଂପାଦକ ଏବଂ ସୁପରିଚିତ ବ୍ୟବସାୟୀ ନରସିଂହ ଦାସ ଭାବସିଂହ ଏହାର କୋଷାଧ୍ୟକ୍ଷ ନିଯୁକ୍ତ ହେଲେ । କାର୍ଯ୍ୟକାରିଣୀ ସମିତିରେ ବହୁ ବିଶିଷ୍ଟ ବ୍ୟକ୍ତି ରହିଲେ । ପ୍ରଭାବଶାଳୀ ବାବା ଭୈରବାନନ୍ଦଙ୍କ ଅଧ୍ୟକ୍ଷତାରେ ଏକ ଅଭ୍ୟର୍ଥନା କମିଟି ଗଠିତ ହୋଇ ୧୯୬୮ରେ ବିଶ୍ୱ ହିନ୍ଦୁ ପରିଷଦର ପ୍ରଥମ ରାଜ୍ୟସ୍ତରୀୟ ସମ୍ମିଳନୀ ଚଣ୍ଡିଖୋଲରେ ଅନୁଷ୍ଠିତ ହେଲା (୭୮) । ସ୍ୱତନ୍ତ୍ର-ଜନ କଂଗ୍ରେସ ସରକାରର ଉପ-ମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ସମ୍ମିଳନୀକୁ ଉଦ୍‌ଘାଟନ କରି ଖ୍ରୀଷ୍ଟୀୟାନ ମିଶନାରୀମାନଙ୍କ ଧର୍ମାନ୍ତରୀକରଣ କାର୍ଯ୍ୟ ବିରୋଧରେ ପଦକ୍ଷେପମାନ ନେବାକୁ ପ୍ରତିଶ୍ରୁତି ଦେଲେ (୭୯) । ଏହାର ପର ବର୍ଷ ପୁରୀରେ ଦ୍ୱିତୀୟ ସମ୍ମିଳନୀ ଆୟୋଜନ କରାଗଲା । ଚଣ୍ଡିଖୋଲ ସମ୍ମିଳନୀ ଭଳି, ଏଥିରେ ବି ସାଧୁ, ପୂର୍ବତନ ରାଜା, ନେତା, ବ୍ୟବସାୟୀ, ଅମଲା ଓ ସର୍ବୋପରି ଆର୍‌ଏସ୍‌ଏସ୍ କର୍ମୀମାନେ ଯୋଗ ଦେଇଥିଲେ ।

ବିଶ୍ୱ ହିନ୍ଦୁ ପରିଷଦ ମାର୍ଫତରେ ସଂଘ ପରିବାର ଆଦିବାସୀ ଇଲାକାରେ ପ୍ରବେଶ ଆରମ୍ଭ କଲା । ଆଦିବାସୀମାନଙ୍କୁ 'ହିନ୍ଦୁ' କରେଇବା ଏବଂ ଖ୍ରୀଷ୍ଟୀୟାନ ମିଶନାରୀମାନଙ୍କର କାର୍ଯ୍ୟକୁ ପ୍ରତିହତ କରିବା ପାଇଁ, ହିନ୍ଦୁ ମିଶନାରୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ (୮୦) ଓ

ଦଳିତ ଆର୍‌ଏସ୍‌ଏସ୍ ପ୍ରଚାରକ ରଘୁନାଥ ସେଠୀ ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ ଜିଲ୍ଲାକୁ ଗଲେ (୮୧)। ଓଡ଼ିଶା ସରକାର ଓଡ଼ିଶା ଫ୍ରିଡମ୍ ଅଫ୍ ରିଲିଜିଅନ୍ ଆକ୍ଟ ୧୯୬୭ ପାଶ୍ କଲେ, ଯେଉଁ ଆଇନରେ ବଳ ପ୍ରୟୋଗ ଦ୍ୱାରା, ଠକାମୀ ବା ପ୍ରଲୋଭନ ଦେଖାଇ ଧର୍ମାନ୍ତର କଲେ ଦଣ୍ଡିତ ହେବାର ବ୍ୟବସ୍ଥା ରହିଲା। ଗୋଟିଏ ପଟେ ଓଡ଼ିଶା ଗୋହତ୍ୟା ନିଷେଧ ଆଇନ (୧୯୬୦)କୁ ବ୍ୟବହାର କରି ଆର୍‌ଏସ୍‌ଏସ୍ ମୁସଲମାନ ବିରୋଧୀ ପ୍ରଚାର ଚଳେଇଲା ବେଳେ, ଅନ୍ୟପଟେ ୧୯୬୭ର ଆଇନ ଖ୍ରୀଷ୍ଟୀୟାନ୍ ବିରୋଧୀ ପ୍ରଚାର ପାଇଁ ଏକ ସହଜ ଆୟୁଧ ହେଲା।

## ସାଂପ୍ରଦାୟିକ ଦଙ୍ଗା ଓ ସଂଭାବନା

## ରାଉରକେଲା ଓ କଟକ

ଚାଳିଶ ଦଶକରେ ଯଦିଓ ହିନ୍ଦୁ-ମୁସଲିମ୍ ସାଂପ୍ରଦାୟିକ ଉତ୍ତେଜନା ଥିଲା, ଓଡ଼ିଶାରେ କିନ୍ତୁ ସାଂପ୍ରଦାୟିକ ଦଙ୍ଗା ଘଟି ନ ଥିଲା। ୧୯୬୪ ମସିହା ମାର୍ଚ୍ଚ ମାସରେ ପ୍ରଥମ ଥର ପାଇଁ ଶିଳ୍ପ ନଗରୀ ରାଉରକେଲାରେ ସାଂପ୍ରଦାୟିକ ଦଙ୍ଗା ସଂଘଟିତ ହେଲା। ଦଙ୍ଗା ପୃଷ୍ଠଭୂମିଟି ଏମିତି: ସେତେବେଳେ ପୂର୍ବ ପାକିସ୍ତାନୀ ହିନ୍ଦୁ ଶରଣାର୍ଥୀମାନଙ୍କୁ ନେଇ ସ୍ୱତନ୍ତ୍ର ଟ୍ରେନ୍ ହାଓଡ଼ାରୁ ମଧ୍ୟପ୍ରଦେଶକୁ ଚଳାଚଳ କରୁଥିଲା। ଖାଦ୍ୟପଦାର୍ଥ ନେବା ପାଇଁ ରାଉରକେଲା ଷ୍ଟେସନ୍‌ରେ ଟ୍ରେନ୍ ଅଟକୁଥିଲା। ସେହି ସମୟରେ ଶରଣାର୍ଥୀମାନେ ସେମାନଙ୍କର ଦୁଃଖଦ ଅନୁଭୂତି ସାଧାରଣ ଲୋକଙ୍କ ଆଗରେ ବର୍ଣ୍ଣନା କରୁଥିଲେ। ଶରଣାର୍ଥୀମାନଙ୍କୁ ଖାଦ୍ୟ ଯୋଗାଇଦେବାକୁ ସରକାର ବି ସାଧାରଣଜନତାଙ୍କୁ ଉତ୍ସାହିତ କରୁଥିଲେ। ଏହାର ଫାଇଦା ନେଇ ଆର୍‌ଏସ୍‌ଏସ୍ ଶରଣାର୍ଥୀମାନଙ୍କ ପାଇଁ ଖାଦ୍ୟର ବନ୍ଦୋବସ୍ତ କରୁଥିଲା ଓ ଗଣମାଧ୍ୟମରେ ଏହାର ଖୁବ୍ ପ୍ରଚାର ହେଉଥିଲା (୮୨)। ମାର୍ଚ୍ଚ ୧୧ ତାରିଖରେ କେତେକ ଆର୍‌ଏସ୍‌ଏସ୍ କର୍ମକର୍ତ୍ତା ପ୍ଲାଟଫର୍ମ ଭିତରେ ମାଇକ୍ ଧରି ହିନ୍ଦୁ ଭାବନା ଉଦ୍ରେକକାରୀ ଏବଂ ପାକିସ୍ତାନ ବିରୋଧୀ ପ୍ରଚାର ଆରମ୍ଭ କଲେ। ଏମିତି ପ୍ରାୟ ସପ୍ତାହେ ଚାଲିଲା। ଧୀରେ ଧୀରେ ଉତ୍ତେଜନା ବି ବଢ଼ିଲା। ଗୁଜବ ପ୍ରଚାର ପରିସ୍ଥିତିକୁ ଆହୁରି ଜଟିଳ କରିଦେଲା। ମାର୍ଚ୍ଚ ୧୮ ତାରିଖ ଦିନ ଗଣ୍ଡଗୋଳ ଆରମ୍ଭ ହେଲା ଓ ୨୦ ତାରିଖ ବେଳକୁ ପରିସ୍ଥିତି ସଙ୍ଗୀନ ହୋଇପଡ଼ିଲା। ପଂଜାବୀ, ବିହାରୀ, ବଙ୍ଗାଳୀ, ଓଡ଼ିଆ ଏବଂ ଆଦିବାସୀମାନେ ଏକଜୁଟ ହୋଇ ମୁସଲମାନମାନଙ୍କୁ ଆକ୍ରମଣ କଲେ। ଏହି ଦଙ୍ଗାରେ ୭୨ ଜଣ ପ୍ରାଣ ହରାଇଥିବାର କୁହାଯାଏ। ଏଥିପାଇଁ ଆର୍‌ଏସ୍‌ଏସ୍ ମୁସଲମାନମାନଙ୍କୁ ଦାୟୀ କଲା ଏବଂ କହିଲା ସେମାନେ ବିନା କାରଣରେ ଶରଣାର୍ଥୀମାନଙ୍କୁ ଆକ୍ରମଣ କଲେ। ବାସ୍ତବରେ କିନ୍ତୁ ଆର୍‌ଏସ୍‌ଏସ୍ ମୁସଲମାନମାନଙ୍କ

ବିରୋଧରେ ହିନ୍ଦୁମାନଙ୍କୁ ଉତ୍ତେଜିତ କରିଥିଲା । ପାଲଧିକର ଓ ଦେଶପାଣ୍ଡେଙ୍କ ସମେତ ସମସ୍ତ ପ୍ରଚାରକଙ୍କୁ ଏଥିପାଇଁ ଗିରଫ କରାଯାଇଥିଲା (୮୩) ।

ଓଡ଼ିଶାର ବାଣିଜ୍ୟିକ ରାଜଧାନୀ କଟକରେ ଦ୍ୱିତୀୟ ବୃହତ୍ ସାଂପ୍ରଦାୟିକ ଦଂଗା ଘଟିଲା । ଏଥର ଆଶୁ କାରଣ ଥିଲା ସୁପ୍ରିମ କୋର୍ଟଙ୍କ ଏକ ରାୟ । ଯାଜପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଅଳକୁଣ୍ଡ ଓ ନୂଆଗାଁର ହିନ୍ଦୁମାନେ ମସଜିଦ୍ ସାମ୍ନାରେ ବାଜା ବଜେଇବାର ଅଧିକାର ଦାବି କରି ଏକ ରିଟ୍ ଦାୟର କରିଥିଲେ । ୧୯୩୧ ମସିହାରେ ଦୁଇ ସଂପ୍ରଦାୟ ମଧ୍ୟରେ ବାଜା ନ ବଜେଇବାକୁ ନେଇ ଏକ ରାଜିନାମା ହୋଇଥିଲା । ହିନ୍ଦୁମାନଙ୍କର ଯୁକ୍ତି ଥିଲା ଯେ ଉକ୍ତ ରାଜିନାମାକୁ ସେମାନେ ମାନିବାକୁ ବାଧ୍ୟ ନୁହନ୍ତି , କାରଣ ଏହାଦ୍ୱାରା ସେମାନଙ୍କର ଅଧିକାର କ୍ଷୁଣ୍ଣ ହେଉଛି । ୧୯୬୮ ମସିହା ଅକ୍ଟୋବର ୨୯ ତାରିଖରେ ସୁପ୍ରିମ କୋର୍ଟର ରାୟ ପ୍ରକାଶ ପାଇଲା । ରାୟ ଅନୁସାରେ, ଉକ୍ତ ଗାଁ ମଧ୍ୟ ଦେଇ ଯାଇଥିବା ରାଜପଥରେ ହିନ୍ଦୁମାନେ ବାଜା ବଜେଇ ଧର୍ମୀୟ ଓ ଅଣ-ଧର୍ମୀୟ ଶୋଭାଯାତ୍ରା ବାହାର କରିପାରିବେ । କିନ୍ତୁ ମାଜିଷ୍ଟ୍ରେଟ୍‌ଙ୍କ ଆଦେଶ ଓ ଆଇନ ମାନିବାକୁ ପଡ଼ିବ (୮୪) । କାର୍ତ୍ତିକେଶ୍ୱର ପୂଜା ସମୟରେ ଏହି ରାୟ ପ୍ରକାଶ ପାଇଥିଲା । ତେଣୁ ହିନ୍ଦୁମାନେ ଜାଣିଶୁଣି ଭସାଣି ଶୋଭାଯାତ୍ରା ଡେରି କରାଇଲେ, ଯେପରି ସଦ୍ୟ ପ୍ରାପ୍ତ ହୋଇଥିବା ଅଧିକାରକୁ ସେମାନେ ଉପଭୋଗ କରିପାରିବେ । କଟକର ମୁସଲମାନମାନେ ସୁପ୍ରିମ କୋର୍ଟ ରାୟକୁ ବିରୋଧ କଲେ । ସେମାନଙ୍କର ଯୁକ୍ତି ଥିଲା ଯେ ମସଜିଦ ସାମ୍ନାରେ ବାଜା ବଜାଇବାର କୌଣସି ପରଂପରା ନାହିଁ । ଯାହାହେଉ, ବୁଝାମଣା ପରେ ମସଜିଦ ସାମ୍ନାରେ ଭସାଣି ଯିବା ପାଇଁ ସେମାନେ ଅନୁମତି ଦେଲେ ।

ଗୋଟିଏ ସପ୍ତାହ ପରେ, ୧୯୬୮ ମସିହା ନଭେମ୍ବର ୨୫ ତାରିଖ ଦିନ କଟକର ସୂତାହାଟ ମସଜିଦ ନିକଟରେ ମୁସଲମାନମାନେ ଖ୍ରୀଷ୍ଟ କଲେଜର କେତେକ ଫୁଟବଲ ଖେଳାଳିଙ୍କୁ ପିଟିଲେ ଓ ଟେକାମାଡ଼ କଲେ ବୋଲି ଅଭିଯୋଗ ହେଲା । ଏହି ଘଟଣା ପରେ ସହରରେ ଦଂଗା ବ୍ୟାପିଗଲା । ଯଦିଓ ଏ ଦଂଗାରେ ଜୀବନ ହାନି ଘଟି ନ ଥିଲା (୮୫), କିନ୍ତୁ ମୁସଲମାନମାନଙ୍କର ଘର, ଦୋକାନ ଲୁଟ୍ ହେଲା ଓ ସେଗୁଡ଼ିକୁ ଜଳେଇ ଦିଆଗଲା (୮୬) । ଏହା ଥିଲା ଏକ ନୂଆ ଲକ୍ଷଣ । ବିରୋଧୀ ଦଳର ନେତାମାନେ ଅସାମାଜିକ ତତ୍ତ୍ୱକୁ ଦଂଗାପାଇଁ ଦାୟୀ କଲା ବେଳେ, ସିପିଆଇ ନେତା ଲୋକନାଥ ଚୌଧୁରୀ ଆର୍‌ଏସ୍‌ଏସ୍‌କୁ ଭର୍ତ୍ସନା କଲେ ଏବଂ 'ରାଷ୍ଟ୍ରଦୀପ'ରେ ପ୍ରକାଶିତ ଉତ୍ତେଜନା ସୃଷ୍ଟିକାରୀ ଲେଖାକୁ ସମାଲୋଚନା କଲେ (୮୭) । କିନ୍ତୁ ସ୍ୱତନ୍ତ୍ର-ଜନ କଂଗ୍ରେସ ସରକାରର ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଆର୍‌ଏସ୍‌ଏସ୍ ଓ ଭାରତୀୟ ଜନସଂଘ ଏଥିରେ ଜଡ଼ିତ ନୁହନ୍ତି ବୋଲି ସଫେଇ ଦେଲେ (୮୮) ।

ଏହିସବୁ ଦଂଗା ପରେ ଆର୍‌ଏସ୍‌ଏସ୍ ନବଯୌବନ ପ୍ରାପ୍ତ ହେଲା । କଟକ ଭଳି ଗୁରୁତ୍ୱପୂର୍ଣ୍ଣ ସହରମାନଙ୍କରେ ଶାଖା ସଂଖ୍ୟା ବଢ଼ିବାରେ ଲାଗିଲା ଏବଂ ସହରୀ ହିନ୍ଦୁ ଯୁବକ ବହୁ ସଂଖ୍ୟାରେ ଶାଖା ପ୍ରତି ଆକର୍ଷିତ ହେଲେ । ସହରୀ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀରେ ଆର୍‌ଏସ୍‌ଏସ୍ ପ୍ରଶଂସାଭାଜନ ହେଲା । ବିଶେଷକରି, ଆର୍‌ଏସ୍‌ଏସ୍‌ର ଶୃଙ୍ଖଳା, ଆଚାର ବ୍ୟବହାର ଏବଂ ସମ୍ଭାବ୍ୟ ମୁସଲମାନ ଆକ୍ରମଣ ବିରୋଧରେ ହିନ୍ଦୁମାନଙ୍କୁ ରକ୍ଷା କରିବାର ସାଂଗଠନିକ ଶକ୍ତି ଏ ପ୍ରଶଂସାର ପାତ୍ର ହେଲା। ଏହି ଦୁଇ ଦଙ୍ଗା ପରେ ସାଂଗଠନିକ ଡୋର ଆଉ ଟିକେ ଦୃଢ଼ ହେଲା । ୧୯୬୭ରେ ରାଉରକେଲାରେ ଅନୁଷ୍ଠିତ ପ୍ରଶିକ୍ଷଣ ଶିବିରରେ ଗୋଲ୍‌ୱାଲ୍‌କର୍ ଯୋଗଦେଲେ। ଓଡ଼ିଶା ଆର୍‌ଏସ୍‌ଏସ୍‌ର ଖ୍ୟାତି ଜାତୀୟ ସ୍ତରରେ ବୃଦ୍ଧି ପାଇଲା । ଓଡ଼ିଶାର ଆର୍‌ଏସ୍‌ଏସ୍ କର୍ମୀମାନଙ୍କୁ ପ୍ରଶିକ୍ଷଣ ପାଇଁ ଆଉ ବାହାରକୁ ଯିବାକୁ ପଡ଼ିଲା ନାହିଁ । ସ୍ଥାନୀୟ ଓଡ଼ିଆ ପ୍ରଚାରକ ଅଣ-ଓଡ଼ିଆଙ୍କ ସ୍ଥାନ ନେଲେ (୯୦) । ଓଡ଼ିଶାରେ ଆର୍‌ଏସ୍‌ଏସ୍‌ର ସଫଳତାକୁ ଲକ୍ଷ୍ୟ କରି, ୧୯୭୦ରେ କେନ୍ଦ୍ରୀୟ ନେତୃତ୍ୱ ଓଡ଼ିଶାକୁ ଏକ ଉନ୍ନତ ପ୍ରଦେଶର ମାନ୍ୟତା ପ୍ରଦାନ କଲେ । ଭୂପେନ୍ଦ୍ର କୁମାର ବସୁ (୮୯)ପ୍ରଥମ ସଂଘଚାଳକ ଏବଂ ନିଷ୍ଠାପର ଓଡ଼ିଆ ପ୍ରଚାରକ ହରିହର ନନ୍ଦ ପ୍ରାନ୍ତ କାର୍ଯ୍ୟବାହୀ ନିଯୁକ୍ତ ହେଲେ ।

## ସଂଗଠନର ବୃଦ୍ଧି

ବାଲା ସାହେବ ଦେଓରସ୍ 'ସରସଂଘଚାଳକ' ହେବା ପରେ, ନବ ଯୌବନ ପ୍ରାପ୍ତ ଆର୍‌ଏସ୍‌ଏସ୍, ସତୁରୀ ଦଶକରେ ନିଜ ସଂଗଠନ ବଢ଼େଇବାକୁ ଲାଗିଲା । ଦେଓରସ୍‌ଙ୍କ ରଣକୌଶଳ ଅନୁଯାୟୀ, ଆର୍‌ଏସ୍‌ଏସ୍ ଓଡ଼ିଶାରେ ତାର ଅନ୍ୟାନ୍ୟ ଭ୍ରାତୃପ୍ରତିମ ସଂଗଠନମାନଙ୍କୁ, ଯଥାଃ ଭାରତୀୟ ଜନସଂଘ, ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ, ଭାରତୀୟ ମଜଦୁର ସଂଘ ଆଦିକୁ ପୁନଃ-ଉଜ୍ଜୀବୀତ କରିବାକୁ ଚେଷ୍ଟାକଲା (୯୧) । ସେହି ସମୟରେ ଓଡ଼ିଶାରେ ଜନସଂଘର ସମର୍ଥନ ଆଧାର ଅତି ନଗଣ୍ୟ ଥିଲା ଏବଂ ମଜଦୁର ସଂଘର ଉପସ୍ଥିତି କିଛି ବି ନ ଥିଲା । ବିଦ୍ୟାର୍ଥୀ ପରିଷଦର ସ୍ଥିତି ଅବଶ୍ୟ ଆଶାଜନକ ଥିଲା । ଏହି ସମୟରେ ଜୟ ପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଆନ୍ଦୋଳନ ଦେଶ ସାରା ଚାଲିଥାଏ । କେନ୍ଦ୍ରୀୟ ନେତୃତ୍ୱର ନିର୍ଦ୍ଦେଶରେ ଓଡ଼ିଶାର ଆର୍‌ଏସ୍‌ଏସ୍ ଏଥିରେ ଯୋଗଦେଲା । ଜନସଂଘ ଓ ବିଦ୍ୟାର୍ଥୀ ପରିଷଦ ସକ୍ରିୟ ଭୂମିକା ଗ୍ରହଣ କଲେ । ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ ଆର୍‌ଏସ୍‌ଏସ୍‌ର ଅନେକ ନେତା ଓ କର୍ମୀ ଗିରଫ ହେଲେ । ବସୁ ଜେଲ୍ ଗଲେ, ପାଲଧିକର ହେଲେ ଭୂମିଗତ । ଅନେକ ସ୍ଥାନରେ ସତ୍ୟାଗ୍ରହ କରି ଆର୍‌ଏସ୍‌ଏସ୍ କର୍ମୀମାନେ ଜେଲ୍ ଗଲେ । କିନ୍ତୁ ଭୂମିଗତ ଆର୍‌ଏସ୍‌ଏସ୍ ନେତାମାନେ ଇଂଦିରା-ବିରୋଧୀ ପ୍ରଚାରପତ୍ର ଅନୁବାଦ କଲେ ଏବଂ ସେସବୁକୁ ଛାତ୍ର,

ବୁଦ୍ଧିଜୀବୀ, ସରକାରୀ କର୍ମଚାରୀ ଓ ଶିକ୍ଷିତ ବର୍ଗଙ୍କ ଭିତରେ ବାଣ୍ଟିଲେ ଓ କଂଗ୍ରେସ-ବିରୋଧୀ ଜନମତ ଗଢ଼ିବା ପାଇଁ କାର୍ଯ୍ୟ କଲେ। ସାଧାରଣତଃ ପୁଲିସ୍ ଯାଉ ନ ଥିବା ଜାଗାମାନଙ୍କରେ ରାତିଅଧିଆ ଗୁପ୍ତ ବୈଠକମାନ କଲେ ଏବଂ ସମସ୍ତ ଜରୁରୀକାଳୀନ ପରିସ୍ଥିତି-ବିରୋଧୀ ଶକ୍ତି ଯଥା: ଗାନ୍ଧୀବାଦୀ, ସମାଜବାଦୀ ଏପରିକି କମ୍ୟୁନିଷ୍ଟମାନଙ୍କ ସହ ଯୋଗାଯୋଗ ସ୍ଥାପନ କଲେ।

ଜରୁରୀକାଳୀନ ପରିସ୍ଥିତି-ବିରୋଧୀ ଆନ୍ଦୋଳନ, ଓଡ଼ିଶାରେ ସଂଘ ପରିବାରର ରାଜନୈତିକ ବିଶ୍ୱସନୀୟତାକୁ ସାବ୍ୟସ୍ତ କଲା। ଜେଲ୍ ଫେରନ୍ତା ବିଦ୍ୟାର୍ଥୀ ପରିଷଦ ନେତାମାନେ ବହୁ ଗୁରୁତ୍ୱପୂର୍ଣ୍ଣ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଛାତ୍ର ସଂସଦ ଅକ୍ତିଆର୍ କଲେ। ୧୯୭୭ ନିର୍ବାଚନରେ ଚାରି ଜଣ ଜନସଂଘ ନେତା ଜନତା ପାର୍ଟି ସଭ୍ୟ ହିସାବରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଲେ ଓ ତତ୍କାଳୀନ ଓଡ଼ିଶା ଜନସଂଘ ସଭାପତି ବିଶ୍ୱ ଭୂଷଣ ହରିଚନ୍ଦନ କ୍ୟାବିନେଟ୍ ମନ୍ତ୍ରୀ ହେଲେ। ଅନୁକୂଳ ରାଜନୈତିକ ପରିବେଶରେ ସଂଗଠନ କାର୍ଯ୍ୟକୁ ତରାନ୍ୱିତ କରିବା ପାଇଁ ଆର୍ଏସ୍ଏସ୍ ଅଣଓଡ଼ିଆ ଯୁବକମାନଙ୍କୁ ଓଡ଼ିଶା ଆଣିଲା। ୧୯୭୮ରେ ଶ୍ୟାମାଜୀ ଗୁପ୍ତା ସହପ୍ରାନ୍ତ ପ୍ରଚାରକ ନିଯୁକ୍ତ ହେଲେ ଓ ୧୯୮୧ରେ କଟକରେ ବିଶାଳ ସଭାର ଆୟୋଜନ କରି ନିଜର ସାଂଗଠନିକ ଦକ୍ଷତାର ପରିଚୟ ଦେଲେ। ଏହି ସଭାରେ ଦଶ ହଜାର ସ୍ୱୟଂସେବକ ଅଂଶଗ୍ରହଣ କରିଥିଲେ। ଧୁରନ୍ଧର ଯୁବ ପ୍ରଚାରକ ସୂର୍ଯ୍ୟକାନ୍ତ କେଲ୍କାର ବିଦ୍ୟାର୍ଥୀ ପରିଷଦର ସାଂଗଠନିକ ସଂପାଦକ ନିଯୁକ୍ତ ହେଲେ।

ସଂକ୍ଷେପରେ କହିଲେ, ଓଡ଼ିଶାରେ ଆର୍ଏସ୍ଏସ୍ ଅପେକ୍ଷାକୃତ ଡେରିରେ ପ୍ରବେଶ କରିଥିଲା ଏବଂ ଷାଠିଏ ଦଶକ ପର୍ଯ୍ୟନ୍ତ କାମଚଳା ଭାବରେ ଚାଲିଥିଲା। ମାର୍ୱାଡ଼ି ସଂପର୍କ ଓ ଅଣଓଡ଼ିଆ ପ୍ରଚାରକଙ୍କ ଉପରେ ମାତ୍ରାଧିକ ନିର୍ଭରଶୀଳତା ହେତୁ ଲୋକେ ଭାବୁଥିଲେ ଏହା ଏକ ମାର୍ୱାଡ଼ି ସଂଗଠନ। ତେଣୁ ସାଧାରଣରେ ଆର୍ଏସ୍ଏସ୍ ପ୍ରତି ଆଗ୍ରହ କମ୍ ଥିଲା। ଅଧିକଂତୁ, ଅଭିଜାତ ବର୍ଗ-କୈନ୍ଦ୍ରିକ ନୀତି ଯୋଗୁଁ ଉଚ୍ଚ ଜାତି-ମଧ୍ୟମ ବର୍ଗର ପରିସୀମା ଭିତରେ ଏହା ଆବଦ୍ଧ ଥିଲା, ଯଦିଓ ଏହି ନୀତି ପ୍ରଥମ ଅବସ୍ଥାରେ ଫଳପ୍ରସୂ ଥିଲା। ଏହି ପରିସୀମା ବାହାରକୁ ନିଜର ସନ୍ଦେଶ ନେଇଯିବାକୁ ଏହା ସମର୍ଥ ନ ଥିଲା, ଫଳରେ ଆର୍ଏସ୍ଏସ୍ ସଂଗଠନ ଧୀର ଗତିରେ ବିଶେଷକରି କେତେକ ସହର ଅଞ୍ଚଳରେ ବୃଦ୍ଧି ପାଉଥିଲା। ଦେଖିବାକୁ ଗଲେ, ରାଉରକେଲା ଓ କଟକ ଦଙ୍ଗା ଆର୍ଏସ୍ଏସ୍କୁ ନବଯୌବନ ଆଣିଦେଲା ଏବଂ ସଙ୍ଗଠନ ବୃଦ୍ଧିରେ ସାହାଯ୍ୟ କଲା। ଭାରତୀୟ ଜନସଂଘ, ବିଶ୍ୱ ହିନ୍ଦୁ ପରିଷଦ, ଭାରତୀୟ ମଜଦୁର ସଂଗଠନ ଓ ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ ଆଦି ଶାଖା ସଙ୍ଗଠନ ଜରିଆରେ ନାଗରିକ ସମାଜ ସହ ସଂପର୍କ ସ୍ଥାପନ କରି ଆର୍ଏସ୍ଏସ୍

ନିଜର ସଂଗଠନକୁ ଦୃଢ଼ୀଭୂତ କଲା । କିନ୍ତୁ, ଜରୁରୀକାଳୀନ ପରିସ୍ଥିତି ଜନିତ ସୃଷ୍ଟ ରାଜନୈତିକ ପରିବେଶ ଆର୍‌ଆର୍‌ଏସ୍‌ର ବୃଦ୍ଧି ପାଇଁ ସୁବର୍ଣ୍ଣ ସୁଯୋଗ ଥିଲା ।

## ପୃଷ୍ଠପୋଷକତା ଓ ପ୍ରତିରୋଧ

ଶୈଶବରେ, ରାଜନୈତିକ-ସାମାଜିକ ଦୃଷ୍ଟିରୁ ରକ୍ଷଣଶୀଳ ଗୋଷ୍ଠୀର ମାନ୍ୟଗଣ୍ୟ ଓଡ଼ିଆ ମାନଙ୍କର ସାମାଜିକ ଓ ରାଜନୈତିକ ପୃଷ୍ଠପୋଷକତା, ମାର୍‌ୱାଡ଼ି ବ୍ୟବସାୟୀଙ୍କ ଅର୍ଥନୈତିକ ପୃଷ୍ଠପୋଷକତା ଏବଂ ଯୌବନ କାଳରେ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପୃଷ୍ଠପୋଷକତା ଆର୍‌ଏସ୍‌ଏସ୍‌କୁ ଅନେକ ସାହାଯ୍ୟ କରିଥିଲା । ପୂର୍ବରୁ କୁହାଯାଇଛି, ରାଉରକେଲା ଓ କଟକ ଦଙ୍ଗା ଆର୍‌ଏସ୍‌ଏସ୍‌କୁ ନବ ଯୌବନ ଆଣି ଦେଇଥିଲା। କଟକ ଦଙ୍ଗାରେ ଆର୍‌ଏସ୍‌ଏସ୍ ଜଡ଼ିତ ନୁହେଁ ବୋଲି ମୁଖ୍ୟମନ୍ତ୍ରୀ ସାର୍ଟିଫିକେଟ୍ ଦେଇଥିଲେ । ଏପରିକି ସ୍ୱତନ୍ତ୍ର-ଜନ କଂଗ୍ରେସ ସରକାରର ଅନେକ ମନ୍ତ୍ରୀ ଆର୍‌ଏସ୍‌ଏସ୍ ପ୍ରତି ସଦୟ ଥିଲେ । ଅଭିବୃଦ୍ଧି କାଳରେ ହରେକୃଷ୍ଣ ମହତାବଙ୍କ ପୃଷ୍ଠପୋଷକତା ଗୁରୁତ୍ୱପୂର୍ଣ୍ଣ ଥିଲା । ଆର୍‌ଏସ୍‌ଏସ୍‌ର ଶୃଙ୍ଖଳା ଓ ସ୍ୱାସ୍ଥ୍ୟଚର୍ଯ୍ୟାର ସେ ଜଣେ ବଡ଼ ପ୍ରଶଂସକ ଥିଲେ । ଜରୁରୀକାଳୀନ ପରିସ୍ଥିତି ସମୟରେ ସେ ଆର୍‌ଏସ୍‌ଏସ୍‌ର ଆହୁରି ନିକଟତର ହୋଇଥିଲେ । ଭଂଜନଗର ଜେଲ୍‌ରେ ଥିବା ସମୟରେ ଆର୍‌ଏସ୍‌ଏସ୍ କର୍ମୀମାନେ ମହତାବଙ୍କୁ ବ୍ୟକ୍ତିଭାବେ ବିଭିନ୍ନ ଭାବରେ ସାହାଯ୍ୟ କରି ତାଙ୍କ ଆଦରର ପାତ୍ର ହୋଇଥିଲେ । ଜେଲ୍‌ରୁ ବାହାରିବା ପରେ ମହତାବ 'ଗାଁ ମଜଲିସ୍' ସ୍ତମ୍ଭରେ ଆର୍‌ଏସ୍‌ଏସ୍‌କୁ ପ୍ରଶଂସା କରି ଲେଖା ପ୍ରକାଶ କଲେ ଏବଂ ତାଙ୍କ 'ପ୍ରଜାତନ୍ତ୍ର'ରେ ଆର୍‌ଏସ୍‌ଏସ୍‌କୁ ଜାଗା ଦେଉଥିଲେ । ଆର୍‌ଏସ୍‌ଏସ୍ ଶିବିରରେ ଯୋଗ ଦେବା ସହ କର୍ମୀମାନଙ୍କୁ ବନ୍ଧୁ ଭାବେ ସାହାଯ୍ୟ କରୁଥିଲେ । ୧୯୮୧ରେ ସେ ଟୋପି, ହାଫ୍‌ପ୍ୟାଣ୍ଟ୍ ପିନ୍ଧି, ଲାଠି ଧରି ଆର୍‌ଏସ୍‌ଏସ୍‌ର କଟକ ର୍‍ୟାଲିରେ ଯୋଗ ଦେଇଥିଲେ ଓ ମରିବା ପର୍ଯ୍ୟନ୍ତ ଆର୍‌ଏସ୍‌ଏସ୍‌ର ବଡ଼ ପୃଷ୍ଠପୋଷକ ଥିଲେ । ଆର୍‌ଏସ୍‌ଏସ୍‌ର ଜରୁରୀକାଳୀନ ସମୟର ଭୂମିକା ଯୋଗୁଁ ବିଶିଷ୍ଟ ସର୍ବୋଦୟ ନେତ୍ରୀ ରମାଦେବୀ ଏବଂ ମାଳତୀ ଚୌଧୁରୀ ଆର୍‌ଏସ୍‌ଏସ୍ ପ୍ରତି ସହାନୁଭୂତିଶୀଳ ଥିଲେ । ଏସବୁ ନେତାନେତ୍ରୀମାନଙ୍କ ସହ ସଂପର୍କ ଆର୍‌ଏସ୍‌ଏସ୍‌ର ସମ୍ମାନ ବଢ଼ାଇଦେଲା । ଏସବୁ ପୃଷ୍ଠପୋଷକତା ସତ୍ତ୍ୱେ, ସମାଜବାଦୀ ଓ କଂଗ୍ରେସର ଏକ ଗୋଷ୍ଠୀ ଆର୍‌ଏସ୍‌ଏସ୍‌କୁ ତୀବ୍ର ବିରୋଧ କରୁଥିଲେ । ପାଲ୍‌ଧିକରଙ୍କ କହିବା ଅନୁସାରେ, ଗାନ୍ଧୀହତ୍ୟା ସହ ସଂପୃକ୍ତି ହେତୁ ଅନେକ ସ୍ୱାଧୀନତା ସଂଗ୍ରାମୀ ଓ କଂଗ୍ରେସ ନେତା ଆର୍‌ଏସ୍‌ଏସ୍‌କୁ ଘରେ ପୂରେଇ ଦେଉ ନ ଥିଲେ । ମୁଖ୍ୟ ବିରୋଧ ସମାଜବାଦୀମାନେ କରୁଥିଲେ ଓ ବିଶ୍ୱନାଥ ପଣ୍ଡିତ ଏଥିରେ ଆଗ ଧାଡ଼ିରେ ଥିଲେ (୯୨) । ପଚାଶ ଦଶକର ଆଦ୍ୟ ଭାଗରେ, କଟକ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ଏକ ସଭାରେ ଆର୍‌ଏସ୍‌ଏସ୍

ନେତା ବାବା ସାହେବ ଆପ୍ଟେ ଯୋଗ ଦେବାର କାର୍ଯ୍ୟକ୍ରମ ଥାଏ । ସଭା ଆରମ୍ଭ ହେବା ପୂର୍ବରୁ ବିଶ୍ୱନାଥ ପଣ୍ଡିତ ଓ କେତେକ ସମାଜବାଦୀ ସଭା ଗୃହକୁ ଅକ୍ତିୟାର୍ କରିନେଲେ, 'ଗାନ୍ଧୀ ହତ୍ୟାକାରୀ ଫେରିଯାଅ' ସ୍ଲୋଗାନ ଦେବା ସହ ଆପ୍ଟେଙ୍କୁ ସଭାସ୍ଥଳକୁ ପ୍ରବେଶ କରାଇ ଦେଲେ ନାହିଁ । ଯଦିଓ ପାଲ୍ଧିକର ଓ କେତେକ ସ୍ୱୟଂସେବକ ଜବରଦସ୍ତି ପଶିବାର ଚେଷ୍ଟା କଲେ, କିନ୍ତୁ ଶେଷରେ ସଭା ବାତିଲ କରିବାକୁ ବାଧ୍ୟ ହେଲେ । ବୀରେନ ମିତ୍ର ସରକାର ରାଉରକେଲା ଦଙ୍ଗା ସମୟରେ ଆର୍‌ଏସ୍‌ଏସ୍ ପ୍ରଚାରକମାନଙ୍କୁ ଗିରଫ କରିବାକୁ ଆଦେଶ ଦେଇଥିଲେ ଏବଂ ନନ୍ଦିନୀ ଶତପଥୀ ସରକାର ଜରୁରୀକାଳୀନ ପରିସ୍ଥିତି ସମୟରେ ସେମାନଙ୍କୁ ଜେଲ୍ ପଠେଇଥିଲେ । କିନ୍ତୁ ପ୍ରତିରୋଧ ତୁଳନାରେ ପୃଷ୍ଠପୋଷକତା ଯଥେଷ୍ଟ ଅଧିକ ଥିଲା ।

## ଶେଷ କଥା

ଉପରୋକ୍ତ ପ୍ରତିବେଦନରୁ ଏତିକି ଲକ୍ଷ୍ୟ କରିବାର କଥା ଯେ ଯଦିଓ ଅନ୍ୟ ରାଜ୍ୟମାନଙ୍କରେ 'ହିନ୍ଦୁତ୍ୱ'ର ଇତିହାସ, ହିନ୍ଦୁରାଜ୍ୟ ଓଡ଼ିଶାରେ 'ହିନ୍ଦୁତ୍ୱ'ର ଆଦ୍ୟ ଇତିହାସ ସହ ବହୁ ଦିଗରୁ ସମାନ, ତଥାପି ଏହାର କିଛି ନୂତନତ୍ୱ ରହିଛି । ଓଡ଼ିଶା ମାଟିର ବିବିଧତା ଓ ବିରୋଧାଭାସ ହିନ୍ଦୁ ଧର୍ମକୁ ଏଠାରେ ଏକ ଅନନ୍ୟ ରୂପ ପ୍ରଦାନ କରିଛି ଯାହା ଜଗନ୍ନାଥ ପରଂପରାରେ ପ୍ରତିଫଳିତ । ଓଡ଼ିଶା ଇତିହାସର ବିଭିନ୍ନ ପର୍ଯ୍ୟାୟରେ, ରାଜନୈତିକ ଶକ୍ତିମାନେ ନିଜର ଆଧିପତ୍ୟ ଓ ମାନ୍ୟତା ସାବ୍ୟସ୍ତ କରିବାପାଇଁ ଏହି ପରଂପରାକୁ ବାର ବାର ନୂଆ ଢଙ୍ଗରେ ଉଦ୍ଭାବିତ କରିଛନ୍ତି । ନିର୍ଦ୍ଦିଷ୍ଟ କରି କହିଲେ, ପ୍ରାକ୍-ଔପନିବେଶିକ ମାନ୍ୟତାକୁ ଔପନିବେଶିକ ଶାସକବର୍ଗ ନୂତନ ଢଙ୍ଗରେ ଉଦ୍ଭାବିତ କଲେ, ଜାତୀୟତାବାଦୀ ଓ ଉତ୍ତର ଔପନିବେଶିକ ଶାସକ ବର୍ଗ ତାକୁ ଗ୍ରହଣ କରିନେଲେ ଏବଂ ଏକ ଅସ୍ମିତା-ଅନ୍ୱେଷୀ ହିନ୍ଦୁ ଉଚ୍ଚଜାତି-ମଧ୍ୟମବର୍ଗୀ ଗୋଷ୍ଠୀ ତାକୁ ଏକେବାରେ ନିଜର କରିନେଲେ । ଅତଏବ, ଓଡ଼ିଶାର ରାଜନୈତିକ-ସାମାଜିକ-ସାଂସ୍କୃତିକ ଜୀବନରେ ଜଗନ୍ନାଥ ପରଂପରାର ସମୟାତୀତ ପ୍ରଭାବ ହିନ୍ଦୁତ୍ୱର ବିକାଶ କ୍ଷେତ୍ରରେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିବାରେ ସହାୟକ ହେଲା । ଏହା ବାଦ୍, ହିନ୍ଦୁ ମହାସଭା ସହ ସଂପର୍କ ରଖିଥିବା କଂଗ୍ରେସର ଏକ ପ୍ରଭାବଶାଳୀ ଗୋଷ୍ଠୀ ଆର୍‌ଏସ୍‌ଏସ୍‌କୁ କେବଳ ମାତ୍ର ସାହାଯ୍ୟ କରି ନ ଥିଲା, ବରଂ ଓଡ଼ିଶାରେ ତା'ର ପ୍ରବେଶପଥକୁ ସୁଗମ କରିଥିଲା ମଧ୍ୟ । ଓଡ଼ିଶା ପାଇଁ ଏକ ନୂତନ ଅନୁଭବ ଥିବା ସାଂପ୍ରଦାୟିକ ଦଙ୍ଗା ହିନ୍ଦୁତ୍ୱର ଅଭିବୃଦ୍ଧିରେ ବେଶ୍ ସାହାଯ୍ୟ କରିଥିଲା । ସର୍ବୋପରି ସାଂଗଠନିକ କୁଶଳତା, ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ପୃଷ୍ଠପୋଷକତା, ଜରୁରୀକାଳୀନ ପରିସ୍ଥିତି ସମୟରେ ଅଭିନବ ରାଜନୈତିକ ପ୍ରୟୋଗ ଓଡ଼ିଶାରେ ହିନ୍ଦୁତ୍ୱକୁ ପ୍ରତିଷ୍ଠା କରିବାରେ ବି ଅବଦାନ ଦେଇଥିଲା । ■

# ସହାୟକ ଗ୍ରନ୍ଥସୂଚୀ

୧. ରବର୍ଟ କ୍ରେନ୍ ସଂପାଦିତ ( 1966) Regions and Regionalism in South Asian Studies: An exploratory study, Monographs and Occasional papers series, Monograph no five, Duke University, Durham ରେ ବର୍ଣ୍ଣିତ ଏସ୍ କନ୍‌ଙ୍କ Regions Subjective and Objective: Their relation to the study of Modern Indian History and Society.

୨. ଗ୍ରୀଷ୍ଟୋଫର୍ ଜାଫର୍‌ଲଟ୍ (1966) The Hindu Nationalist Movement and Indian Politics, 1925 to the 1990s : Strategies of identity building, implantation and mobilisation (with special reference to Central India), Viking, Delhi.

୩. ଥୋମାସ୍ ବ୍ଲମ୍ ହାନ୍‌ସେନ୍ (1999) The Saffron wave: Democracy and Hindu Nationalism in Modern India, Oxford University Press, New Delhi.

୪. କେ. ଜୟପ୍ରସାଦ (1991) RSS and Hindu Nationalism: Inroads in a leftist stronghold, Deep and Deep, NewDelhi.

୫. ଷ୍ଟେନ୍ ଟୋନେସନ୍ ଓ ହାନ୍ସ୍ ଆଣ୍ଟଲୋଭ୍ ସଂପାଦିତ (1996) Asian forms of the Nation, Curzon Pressରେ ଏରିଲ୍‌ଡ୍ ଏଙ୍ଗେଲ୍‌ସ୍‌ମ୍ୟାନ୍ ରୁଡ୍‌ଙ୍କ Contradictions and Ambivalence in the Hindu Nationalist Discourse in West Bengal (ପୃଷ୍ଠା ୧୫୦-୧୮୦)

୬. ଅସଲରେ, ଅପସୃୟମାନ ଔପନିବେଶିକ ଅମଲାତନ୍ତ୍ର ଏପରି ଏକ ଧାରଣାର ବଶବର୍ତ୍ତୀ ଥିଲା । ଉଦାହରଣ ସ୍ୱରୂପ ଲର୍ଡ ଓ୍ୱାଭେଲ୍‌ଙ୍କୁ ଲେଖିଥିବା ଚିଠିରେ ରାଜ୍ୟପାଳ ତ୍ରିବେଦୀ ଓଡ଼ିଶାକୁ 'ହିନ୍ଦୁ ପ୍ରଦେଶ' ଭାବେ ଅବିହିତ କରିଥିଲେ । ବିଶ୍ୱମୟ ପତି (1993): Resisting dominion: Peasants, tribals and the national movement in Orissa 1920-50, Manohar, New Delhi ରେ ଉଦ୍ଧୃତ (ପାଦଟୀକା ସଂଖ୍ୟା ୧୦୫, ପୃଷ୍ଠା ୨୪୧) ।

୭. ଦର୍ଶାଯାଇଛି ଯେ ରାଜନୈତିକ ଦୃଷ୍ଟିକୋଣରୁ ଯେତେବେଳେ ନବଗଠିତ ସିନ୍ଧୁ ପ୍ରଦେଶର ଗଠନ ପ୍ରକ୍ରିୟାର ଏହା ଏକ ବର୍ଜ୍ୟବସ୍ତୁ ବା ବାଇପ୍ରଡକ୍ଟ ଥିଲା । ସାଂପ୍ରଦାୟିକ ଭାବନା ଥିବା ଭାରତୀୟ ଜନସାଧାରଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଂରେଜ ଶାସକମାନେ ଦରିଦ୍ର ଓଡ଼ିଶାକୁ ଏକ ହିନ୍ଦୁ ପ୍ରଦେଶ ଭାବେ ଗଠନ କରି ଦେଇଥିଲେ, ଯାହାଫଳରେ ଇଂରେଜ-ଶାସକମାନେ ଭାରତୀୟମାନଙ୍କୁ ବିଭାଜିତ କରି ଶାସନ କରିପାରିବେ ।

୮. ଏନ୍ ଜି ବାରିୟର୍ (1981) ସଂପାଦିତ The Census in British India: New

Perspectives, Manohar, NewDelhiରେ କେନେଥ୍ ଡବ୍ଲ୍ୟୁ ଜୋନ୍ସଙ୍କ Religious Identity and the Indian Census (ପୃ 73-101)।

୯. ଧର୍ମ ଅନୁସାରେ, ୧୯୯୧ରେ ଜନସଂଖ୍ୟା ଏହିପରି ଥିଲା: ହିନ୍ଦୁ- ୯୬.୬୭ ଭାଗ, ଖ୍ରୀଷ୍ଟୀୟାନ- ୨.୧୦ ଭାଗ, ମୁସଲମାନ- ୧.୮୮ ଭାଗ, ଶିଖ- ୦.୦୫ ଭାଗ, ବୌଦ୍ଧ- ୦.୦୩ ଭାଗ, ଜୈନ- ୦.୦୨ ଭାଗ ଓ ଅନ୍ୟାନ୍ୟ- ୧.୩୦ ଭାଗ। ରାଜ୍ୟମାନଙ୍କ ମଧ୍ୟରେ କେବଳ ହିମାଚଳ ପ୍ରଦେଶରେ ଅଧିକ ପ୍ରତିଶତ (୯୫.୯୦) ହିନ୍ଦୁ ବାସ କରନ୍ତି।

୧୦. ମନମୋହନ ଗାଙ୍ଗୁଲି (1912): Orissa and her Remains: Ancient and Medieval (District Puri), Eastern Book House, Patna, 1987 (ପୃଷ୍ଠା- ୬।)

୧୧. ନବୀନ କୁମାର ସାହୁ ସଂପାଦିତ (1956): A History of Orissa, vol-1, Sushil Gupta (India), Calcuttaରେ ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟର୍‌ଙ୍କ 'Jagannath' ଦ୍ରଷ୍ଟବ୍ୟ (ପୃ-5)।

୧୨. ଏଜନ - କପିଳ ସଂହିତା, ଅଧ୍ୟାୟ-୧, ପଦ-୮-୯, ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟର୍‌ଙ୍କ 'Jagannath' ରେ ଉଦ୍ଧୃତ।

୧୩. ଏମ୍. ଏନ୍. ଶ୍ରୀନିବାସ (1952): Religion and Society among the Coorgs of South India, Asia, Bombay ଦ୍ରଷ୍ଟବ୍ୟ।

୧୪. ଏଲ୍. ଏସ୍.ଏସ୍. ଓ'ମ୍ୟାଲେ (1935): Popular Hinduism: The religion of the Masses, Cambribge University Press, Cambribge ଏବଂ ସି.ଜେ. ଫୁଲର୍ (1992): The Camphor flame: Popular Hinduism and Society in India, Penguin, New Delhi.

୧୫. ମ୍ୟାକ୍‌କିମ୍ ମାରିଅଟ୍ ସଂପାଦିତ (1955): Village India: Studies in the Little Community, University of Chicago Press, Chicago.

୧୬. ଯଦିଓ ଓଡ଼ିଆ ସମାଜ ଆଜି ବି ଅନେକ କୁସଂସ୍କାରଗ୍ରସ୍ତ, ଏହାର ଏକ ଅତିଶୟୋକ୍ତି ଏଫ୍‌ବିଲଗ୍ରି(1850): Orissa, The Garden of Superstition and Idolatry: Including an account of British Connexion with the temple of Jagannath, R.N. Bhattacharya, Calcutta, 2000 ଦ୍ୱିତୀୟ ମୁଦ୍ରଣରେ ଦ୍ରଷ୍ଟବ୍ୟ।

୧୭. ୧୯୯୧ ମସିହାର ଜନଗଣନା ଅନୁଯାୟୀ, ଅନୁସୂଚିତ ଜାତିର ଜନସାଧାରଣ ଓଡ଼ିଶାର ଜନସଂଖ୍ୟାର ୧୬.୨ ଭାଗ ଥିଲେ।

୧୮. ୧୯୯୧ ମସିହାର ଜନଗଣନା ଅନୁଯାୟୀ, ଅନୁସୂଚିତ ଜନଜାତିର ଜନସାଧାରଣ ଓଡ଼ିଶାର ଜନସଂଖ୍ୟାର ୨୨.୨ ଭାଗ ଥିଲେ। କନ୍ଧ, କୋହ୍ଲ, ସାନ୍ତାଳ, ଶବର ଏବଂ ଗଣ୍ଡମାନେ ବଡ଼ ବଡ଼ ଆଦିବାସୀ ସଂପ୍ରଦାୟ।

୧୯. ଗଞ୍ଜାମ ଓ କୋରାପୁଟର ପାହାଡ଼ି ସଉରାମାନଙ୍କର ଧର୍ମୀୟ ବିଶ୍ୱାସର ବର୍ଣ୍ଣନା ପାଇଁ ଭେରିୟର୍ ଏଲ୍ୱିନ୍: (1955) : The Religion of an Indian Tribe, Oxford University

Press, Bombay ଦ୍ରଷ୍ଟବ୍ୟ।

୨୦.ଆନ୍‌ଚାର୍ଲୋଟ୍ ଏଶ୍‌ମ୍ୟାନ୍ ଏବଂ ଅନ୍ୟମାନଙ୍କ ସଂପାଦିତ (1986): The Cult of Jagannath and the Regional Tradition of Orissa, Manohar, New Delhi, ହେର୍‌ମାନ୍ କୁଲ୍‌କେ ଏବଂ ବୁର୍କହାର୍ଡ ସ୍ନେପେଲ୍‌ଙ୍କ ସଂପାଦିତ (2001): Jagannath Revisited; studying Society, Religion and the State in Orissa, Manohar, New Delhi, ଇଶିତା ବାନାର୍ଜୀ ଦୁବେ (2001): Divine Affairs: Religion, Pilgrimage and the state in Colonial and Postcolonial India, Shimla, IIAS ଦ୍ରଷ୍ଟବ୍ୟ।

୨୧. ହେର୍‌ମାନ୍ କୁଲ୍‌କେ ଏବଂ ବୁର୍କହାର୍ଡ ସ୍ନେପେଲ୍ ସଂପାଦିତ Jagannath Revisited ତନ୍ତ୍ରେିବ (ପୃ-25-48) ରେ ପ୍ରସନ୍ନ ନାୟକଙ୍କ Jagannath and the Adivasis: Reconsidering the cult and its tradition ଦ୍ରଷ୍ଟବ୍ୟ।

୨୨. ବିଶ୍ୱଜିତ୍ ମହାନ୍ତି (2000) Politics of Rehabilitation: A case study of the Indravati Project, ଅପ୍ରକାଶିତ ପିଏଚ୍‌ଡି ଥେସିସ୍, University of Delhi (ପୃ-78)।

୨୩. ଆନ୍‌ଚାର୍ଲୋଟ୍ ଏଶ୍‌ମ୍ୟାନ୍ ଏବଂ ଅନ୍ୟମାନଙ୍କ ସଂପାଦିତ The Cult of Jagannath ତନ୍ତ୍ରେିବ (ପୃ: 139-55)ରେ ହେର୍‌ମାନ୍ କୁଲ୍‌କେଙ୍କ Early Royal Patronage of the Jagannath Cult.

୨୪. ଔପନିବେଶିକ ସମୟ ପୂର୍ବରୁ ଓଡ଼ିଆମାନଙ୍କ ମଧ୍ୟରେ ଏକ ଶକ୍ତିଶାଳୀ ଅସ୍ମିତାର ଚେତନା ନ ଥିଲା। ବି. ଏନ୍. ମହାପାତ୍ର (1996): Ways of Belonging: The Kanchi Kaveri Legend and the Construction of Oriya Identity: Studies in History, vol-12, No. 2, (ପୃ- 203-21) ଦ୍ରଷ୍ଟବ୍ୟ।

୨୫. ଏହି ତିନି ଧରଣର ଜାତୀୟତାବାଦର ଏକ ଆଲୋଚନା ପାଇଁ ଆନ୍‌ଚାର୍ଲୋଟ୍ ଏଶ୍‌ମ୍ୟାନ୍ ଏବଂ ଅନ୍ୟମାନଙ୍କ ସଂପାଦିତ The Cult of Jagannath ତନ୍ତ୍ରେିବ (ପୃ- 359-74)ରେ ଗଗନେନ୍ଦ୍ରନାଥ ଦାଶଙ୍କ Jagannath and Oriya Nationality ଦ୍ରଷ୍ଟବ୍ୟ।

୨୬.ଗୋପବନ୍ଧୁ ଦାସ (1923), ବନ୍ଦୀର ଆତ୍ମକଥା।

୨୭. ବିଷ୍ଣୁ ନାରାୟଣ ମହାପାତ୍ର (1990): The Politics of Oriya Nationalism 1903-1936 ଅପ୍ରକାଶିତ ଡି.ଫିଲ୍ ଥେସିସ୍, Oxford University (ପୃ- 187) ଦ୍ରଷ୍ଟବ୍ୟ।

୨୮.ଉଦାହରଣସ୍ୱରୂପ, ପୁରୀରୁ ନିଜର ପଦଯାତ୍ରା ଆରମ୍ଭ କରିବାକୁ ମହାତ୍ମାଗାନ୍ଧୀଙ୍କ ନିଷ୍ପତ୍ତି ହୁଏତ ଜଗନ୍ନାଥ ଜନିତ କାରଣ ଦ୍ୱାରା ପ୍ରଭାବିତ ହୋଇଥିଲା। ୧୯୩୭ରେ ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ପାରଳାଖେମୁଣ୍ଡିର ରାଜା, ଶପଥଗ୍ରହଣ ପରେ ଜଗନ୍ନାଥ ମନ୍ଦିରକୁ ଦର୍ଶନ ପାଇଁ ଯାଇଥିଲେ, ଯଦିଓ ବଂଶଗତ ବୈରତା ପାଇଁ ତାଙ୍କ ପୂର୍ବଜମାନେ ପୁରୀ ଯିବା ବନ୍ଦ

କରିଦେଇଥିଲେ । ଆଧୁନିକ ଓଡ଼ିଶାର ଅନ୍ୟତମ କର୍ଣ୍ଣଧାର ବିଜୁ ପଟ୍ଟନାୟକ ୧୯୯୦ରେ କ୍ଷମତାକୁ ଫେରିବା ପାଇଁ ତାଙ୍କ ପ୍ରଚେଷ୍ଟାକୁ ଦିଗ୍‌ଦର୍ଶନ ଦେବା ପାଇଁ ଜଗନ୍ନାଥଙ୍କ ସାହାଯ୍ୟ ଲୋଡ଼ିଥିଲେ । ବହୁ କାଳ ଧରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ଜାନକୀବଲ୍ଲଭ ପଟ୍ଟନାୟକ ଅନେକ କବିତା ଜଗନ୍ନାଥଙ୍କୁ ଉତ୍ସର୍ଗ କରି ରଚନା କରିଥିଲେ ।

୨୯. ବିଶଦ ବିବରଣୀ ପାଇଁ , ଭବାନୀ ଚରଣ ରାୟ ( 1989) ମୋଗଲ ଓଡ଼ିଶା: ଇତିହାସ ଓ ସଂସ୍କୃତି, ବିଦ୍ୟାପୁରୀ, କଟକ ଦ୍ରଷ୍ଟବ୍ୟ ।

୩୦. ଓଡ଼ିଶାରେ ମରାଠା ଶାସନର ଏକ ସଂବେଦନଶୀଳ ଆଲେଖ୍ୟ ପାଇଁ ବି.ସି. ରାୟ (1993) New Lights of Maratha Orissa, L. roy, Bhubaneswar.

୩୧.ଏଲ୍ ଏସ୍ ଏସ୍ ଓ' ମ୍ୟାଲେ (1984): Bengal District gazetteers, Puri, ପୁନର୍ମୁଦ୍ରଣ, usha, New Delhi.

୩୨. ଏଜନ

୩୩. ବ୍ରଜସୁନ୍ଦର ଦାସ ସଙ୍କଳିତ Orissa in Hamilton's Hindostan (1820) ପୃ-7

୩୪. ରିଚାର୍ଡ ଇଟନ୍ (1993): The rise of Islam and the Bengal Frontier: 1204 - 1760, University of California Press, Berkeley, Chapter- 5: mass Conversion to Islam: Theories and Protagonists, (ପୃ- 113-36) ଦ୍ରଷ୍ଟବ୍ୟ ।

୩୫. ଓଡ଼ିଆମାନଙ୍କ ମଧ୍ୟରେ ପ୍ରଚଳିତ ଧାରଣା ଅନୁଯାୟୀ, କଳାପାହାଡ଼ ଜଣେ ମୂର୍ତ୍ତି ଧ୍ୱଂସକାରୀ । ହେର୍‌ମ୍ୟାନ୍ କୁଲ୍‌କେ ଓ ବୁର୍କହାର୍ଡ ସ୍ନେପେଲ୍ ସଂପାଦିତ Jagannath Revisited ଡଭ୍ରେିବ (ପୃ-227-51)ରେ ଗଗନେନ୍ଦ୍ରନାଥ ଦାଶ: Kalapahar, The Iconoclast; The Making and message of Legendary Traditions: Reconversionn in Mediaval Orissa and Bengal ଦ୍ରଷ୍ଟବ୍ୟ ।

୩୬. ରିଚର୍ଡ ଇଟନ୍ (2000): Essays on Islam and Indian History, Oxford University Press, New Delhi, ପୃ- 107

୩୭. ଏଜନ, ପୃ- 106

୩୮. ଏଜନ, ପୃ- 116

୩୯.ସତ୍ୟପୀର ପରଂପରା ବଂଗ ପ୍ରଦେଶରେ ମଧ୍ୟ ଦେଖାଯାଏ । ଡେଭିସ୍ ଏସ୍ ଲୋପେଜ୍ ଜୁନିୟର୍ ସଂପାଦିତ Religion of India in Practice (1995), Princeton University Press, Princeton (ପୃ- 578-97) ରେ ଟୋନି କେ. ଷ୍ଟିୱାର୍ଟଙ୍କ Satya Pir, Muslim Holyman and Hindu God ଦ୍ରଷ୍ଟବ୍ୟ ।

୪୦.କିନ୍ତୁ ବଙ୍ଗଳାର ମୁସଲମାନମାନଙ୍କ ପରି ଓଡ଼ିଶାର ମୁସଲମାନମାନେ ମଧ୍ୟ ହୁଏତ ନିଜର ସ୍ୱତନ୍ତ୍ର ପରିଚିତି ରକ୍ଷା କରିବାକୁ ପ୍ରାୟ ସଂପୂର୍ଣ୍ଣ ଭାବେ ସତ୍ୟପୀରଙ୍କୁ ପୂଜା କରିବା ବନ୍ଦ କରି ଦେଇଛନ୍ତି । ଅନ୍ୟଦିଗରେ ହିନ୍ଦୁମାନେ ସତ୍ୟପୀରଙ୍କୁ ପୂଜା କରି ଆସୁଛନ୍ତି । କାରଣ ବୈଷ୍ଣବ

ଅବତାରବାଦର ପ୍ରଭାବଶାଳୀ ଧର୍ମୀୟ ପରିସୀମା ମଧ୍ୟରେ ସତ୍ୟସୀରଙ୍କୁ ସହଜରେ ସ୍ଥାନିତ କରାଯାଇପାରେ । ଏଜନ (ପୃ- 580)

୪୧. ଏହିପରି ଶବ୍ଦର ଏକ ତାଲିକା ପାଇଁ ବଂଶୀଧର ମହାନ୍ତି ଓ କେ.ବି. ତ୍ରିପାଠୀ (1967)ଙ୍କ Perso-Arabic Influence on Oriya, Orissa Historical Research Journal, vol-XV, No.1 and2, pp 65-112

୪୨. ବିଶ୍ୱମୟ ପତିଙ୍କ Situating Social History: Orissa (1800-1997), Orient Longman, New Delhi(ପୃ 26-49)) ରେ The High-Low Dialectic in Fakirmohan's Chaman Athaguntha: Popular culture, literature and society in the 19th century Orissa ଦ୍ରଷ୍ଟବ୍ୟ ।

୪୩. ଆର୍. ଏସ୍. ଏସ୍, ନେତାମାନେ ଦର୍ଶାନ୍ତି ଯେ ଏହି କାରଣ ପାଇଁ ଓଡ଼ିଶାରେ ଆର୍.ଏସ୍.ଏସ୍‌ର ବୃଦ୍ଧି ମନ୍ଥର, କିନ୍ତୁ ସଭ୍ୟ ସଂଖ୍ୟାରେ କୌଣସି ଆକସ୍ମିକ ପରିବର୍ତ୍ତନ ନହୋଇ ଏହି ବୃଦ୍ଧି steady and consistent.

୪୪. ଦାଶରଥି ସୁଆର (1990): The Christian missionaries in Orissa: Their impact on Ninteenth Century Society, Pun thi Pustak. Calcutta (ପୃଷ୍ଠା-୯୨) ଦ୍ରଷ୍ଟବ୍ୟ.

୪୫. ଆନ୍‌ଚାର୍ଲେଟ୍ ଏଶ୍‌ମ୍ୟାନ୍ ଏବଂ ଅନ୍ୟାନ୍ୟ ସଂପାଦିତ The Cult of Jagannath ତତ୍ତ୍ୱରେ ଇଷ୍ଟମ୍ୟାନଙ୍କର Mahima Dharma: An Autochthonous Hindu Reform Movement ଦ୍ରଷ୍ଟବ୍ୟ । ଶୁଭକାନ୍ତ ବେହେରାଙ୍କ (1997) Jagannath and Alekh: A study in Juxtaposition 'Economic and political Weekly, Vol-XXXII, Nos 33 and 34, August 16-23.(ପୃ- ୨୦୯୬-୯୭- ଦ୍ରଷ୍ଟବ୍ୟ)

୪୬. ପ୍ରାରମ୍ଭିକ ବର୍ଷଗୁଡ଼ିକରେ ଓଡ଼ିଆମାନଙ୍କ ମଧ୍ୟରେ ଜଗନ୍ନାଥ ତତ୍ତ୍ୱର ପ୍ରଭାବ ସଂପର୍କରେ ଜାଣିବାରେ ବିଫଳତା ହେତୁ ଓଡ଼ିଶାରେ ଆର୍.ଏସ୍.ଏସ୍‌ର ପ୍ରଭାବ ଗଭୀର ନ ଥିଲା । ଓଡ଼ିଶାର ପ୍ରଥମ ପ୍ରାନ୍ତ ସଂଘ ଚାଳକ ଭୂପେନ୍ଦ୍ର କୁମାର ବସୁଙ୍କ ସହ ସାକ୍ଷାତକାର ।

୪୭. ଏଲ୍.ଏସ୍.ଏସ୍ ଓ'ମ୍ୟାଲେଙ୍କ Bihar and Orissa District Gazetteers, Cuttack, 2nd edition, EJR Cousins, Patna ରେ ଡି.ଏଚ୍ କିଙ୍ଗ୍‌ସ୍ଫୋର୍ଡଙ୍କ (1993) Settlement Report of Balasore ର ଉଦ୍ଧୃତି (ପୃଷ୍ଠା-୫୮)

୪୮. ଏ. ଷ୍ଟର୍ଲିଙ୍ଗ୍ (1822) An Account (Geographical, Statistical and historical) of Orissa proper or Cuttack, Bengal Secretariate Press, Calcutta-1904 (ପୃଷ୍ଠା- ୨୫)

୪୯. କେ. କ୍ଲୋଷ୍ଟର ମେୟର (1989): A survey of Hinduism, State University

of Newyork, Albany (ପୃଷ୍ଠା - ୨୧୧)

୫୦. ଏଲ୍.ଏସ୍.ଏସ୍ ଓ'ମ୍ୟାଲେଙ୍କ Bengal District Gazetteers, Puri, ତତ୍ରୈବ, ଦ୍ରଷ୍ଟବ୍ୟ (ପୃ- ୯୮)

୫୧. ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟର୍ (1877): A Statistical Account of Bengal: District of Puri and the Orissa Tributary States, Vol. XIX, Trubner and Co., London, rpt, D. K. Publishing Company, Delhi, 1976 (ପୃ ୪୨-୪୩)

୫୨. ହରେକୃଷ୍ଣ ମହତାବଙ୍କ ମୁଖ୍ୟ ସଂପାଦନାରେ (1957): History Of Freedom movement in Orissa, vol-IV (1930-47), State Committee for Compilation of History of Freebom movement in Orissa, Cuttack (ପୃ ୫୫-୫୬)

୫୩. ସୁଶୀଲ ଚନ୍ଦ୍ର ଦେ ସଂକଳିତ (1966): Diary of Political Events in Orissa: April, 1936-August 15, 1964, The Committee for Compilation Who's Who of the Freedom Movement, (ପୃ- ୫୧)

୫୪. ଏକନ (ପୃ- ୫୫)

୫୫. ହରେକୃଷ୍ଣ ମହତାବଙ୍କ ମୁଖ୍ୟ ସଂପାଦନାରେ: The History Of Freedom movement in Orissa, vol-IV (1930-47), State Committee for Compilation of History of Freebom movement in Orissa, Cuttack (ପୃ- ୧୩୨ - ୧୩୩)

୫୬. ବିଶ୍ୱମୟ ପତି: Resisting Dominion, ତତ୍ରୈବ, (ପୃ- ୨୨୧)

୫୭. ସୁଶୀଲ ଚନ୍ଦ୍ର ଦେ ସଂକଳିତ (1966): Diary of Political Events in Orissa: April, 1936-August 15, 1964, The Committee for Compilation Who's Who of the Freedom Movement, (ପୃ- ୨୬-୩୦)

୫୮. ହରେକୃଷ୍ଣ ମହତାବ (1960): The History of Orissa, vol-II, Prajatantra Prachar Samiti, Cuttack t, (ପୃ ୪୫୬)

୫୯. ଓଡ଼ିଶାରେ ବରିଷ୍ଠ ମହାରାଷ୍ଟ୍ରୀୟ ପ୍ରଚାରକ ବାବୁରାଓ ଦେଶପାଣ୍ଡେଙ୍କ ସହ ସାକ୍ଷାତକାର।

୬୦. ମହାରାଷ୍ଟ୍ରର ଆର୍‌ଭୀ ଠାରେ ୧୯୨୧ରେ ପାଲ୍‌ଧିକରଙ୍କ ଜନ୍ମ। ଆର୍‌ଭୀକୁ ହେଡ୍‌ଗେୱାରଙ୍କ ଗସ୍ତ ତାଙ୍କୁ ଆର୍‌ଏସ୍‌ଏସ୍‌ରେ ସାମିଲ ହେବାକୁ ପ୍ରେରଣା ଦେଲା। ୧୯୪୦ ମସିହାରେ ନାଗପୁରର ମରିସ୍ କଲେଜରୁ ସ୍ନାତକ ହେଲା ପରେ ସେ ଜଣେ ପ୍ରଚାରକ ହେଲେ ଏବଂ ପଞ୍ଜାବ ଗଲେ। ପଞ୍ଜାବରେ ପାଲ୍‌ଧିକର ୧୦ ବର୍ଷ ରହିଲେ। ୧୯୪୯ରେ ଗୋଲ୍‌ୱାଲ୍‌କର୍ ତାଙ୍କୁ ପ୍ରଥମ ପ୍ରାନ୍ତ ପ୍ରଚାରକ କରି ଓଡ଼ିଶା ପଠେଇଲେ। ପାଲ୍‌ଧିକରଙ୍କୁ ଓଡ଼ିଶାରେ ଆର୍‌ଏସ୍‌ଏସ୍‌ର ପ୍ରତିଷ୍ଠାତା ହିସାବରେ ବିଚାର କରାଯାଏ।

୬୧. କେନ୍ଦ୍ର ଭାରତର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହାୟତାରେ ଆର୍‌ଏସ୍‌ଏସ୍ କିଭଳି ନିଜର ପ୍ରସାର ଘଟାଇଲା ସେ ବିଷୟରେ ଜାଫର୍‌ଲଟ୍ ଆଲୋଚନା କରିଛନ୍ତି। ଖ୍ରୀଷ୍ଟଫର୍ ଜାଫର୍‌ଲଟ୍

The Hindu Nationalist Movement and Indian Politics, ତତ୍ରୈବ ଦ୍ରଷ୍ଟବ୍ୟ।

୬୨. ଜଣେ ପୂର୍ବତନ ଦେଶୀୟ ଶାସକ ହରିହର ସିଂହ ମର୍ଦରାଜଙ୍କ ନାଁ ଏହି ତାଲିକାରେ ଥିଲା। ମର୍ଦରାଜଙ୍କୁ କଟକ ସହରର ସଂଘଚାଳକ ହେବା ପାଇଁ ପାଲ୍‌ଧିକର ପ୍ରବର୍ତ୍ତାଇଲେ। ବାବୁରାଓ ପାଲ୍‌ଧିକରଙ୍କ ସହ ସାକ୍ଷାତକାର।

୬୩. ବାବୁରାଓ ପାଲ୍‌ଧିକରଙ୍କ ସହ ସାକ୍ଷାତକାର।

୬୪. ୧୯୪୬ରେ ଭୁବନେଶ୍ୱରରେ ଆୟୋଜିତ ଖଣ୍ଡାୟତ ସମ୍ମେଳନରେ ମଙ୍ଗରାଜ ସଭାପତିତ୍ୱ କରିଥିଲେ।

୬୫.ହରେକୃଷ୍ଣ ମହତାବଙ୍କ ମୁଖ୍ୟ ସଂପାଦନାରେ (1957): History Of Freedom movement in Orissa, vol-IV ତତ୍ରୈବ (ପୃ-୬୧)

୬୬. ନୀଳକଣ୍ଠ ଦାସଙ୍କ ନଥିପତ୍ର (Papers) ନେହରୁ ମେମୋରିଆଲ୍ ମ୍ୟୁଜିୟମ୍ ଓ ଲାଇବ୍ରେରୀ (NMML) ନୂଆଦିଲ୍ଲୀ ଦ୍ରଷ୍ଟବ୍ୟ।

୬୭. ହିନ୍ଦୁ ମହାସଭାର ନଥିପତ୍ର (Papers) File No. 17 (1943) NMML, NeWDelhi. ୧୯୪୩ରେ ପ୍ରଦେଶରେ ପ୍ରାଥମିକ ସଦସ୍ୟମାନଙ୍କର ମୋଟ ସଂଖ୍ୟା ଥିଲା ୨୫୦୭ ତତ୍ରୈବ। ନୂଆ ସଭ୍ୟ ସଂଗ୍ରହ କରିବାକୁ ସାରା ଭାରତ ହିନ୍ଦୁ ମହାସଭା ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗର ଜଣେ ଅବସରପ୍ରାପ୍ତ ଅଫିସରଙ୍କୁ ଦରମା ଦେଇ ରଖିଥିଲେ। Orissa Provincial Hindu Sabha papers, Hindu Mahasabha Papers, file No. 58, NMML, NewDelhi ଦ୍ରଷ୍ଟବ୍ୟ।

୬୮.ହରେକୃଷ୍ଣ ମହତାବଙ୍କ ମୁଖ୍ୟ ସଂପାଦନାରେ (1957): History Of Freedom Movement in Orissa, vol-IV ତତ୍ରୈବ (ପୃ- ୧୦୬)

୬୯. ଭାଷଣର ପ୍ରତିଲିପି ପାଇଁ ହିତବାଦ, ଅକ୍ଟୋବର ୨୦, ୧୯୫୦ ଦ୍ରଷ୍ଟବ୍ୟ।

୭୦, ଏଜନ, ପୃ-୬

୭୧. ରେଭରେଣ୍ଡ ଏ. ସଟନ୍ (1850) Orissa and its Evangelisation, Derby, England (ପୃ-୪୮) ଦ୍ରଷ୍ଟବ୍ୟ। ଏ. ଷ୍ଟର୍ଲିଙ୍ଗ୍ (1822) An Account (Geographical, Statistical and historical) of Orissa proper or Cuttack, ତତ୍ରୈବ (ପୃ- VIII) ମଧ୍ୟ ଦ୍ରଷ୍ଟବ୍ୟ।

୭୨. ହେର୍‌ମାନ୍ କୁଲ୍‌କେ ଏବଂ ବୁର୍କହାର୍ଡ ସ୍ନେପେଲ୍ ସଂପାଦିତ Jagannath Revisited ତତ୍ରୈବରେ ହେନେରିଖ୍ ଫନ୍ ଷ୍ଟେଟନ୍‌କ୍ରନ୍‌ଙ୍କ A Congregation of Gods: The Dola Melana Festival of Orissa (ପୃଷ୍ଠା- ୩୯୮) ଦ୍ରଷ୍ଟବ୍ୟ।

୭୩. ନିଜର ବିଭାଜନ ଓ ଶାସନ ନୀତିକୁ ଚିରାୟତ କରିବା ପାଇଁ ବ୍ରିଟିଶମାନେ ବର୍ଗୀମାନଙ୍କର ଏକ ନକରାତ୍ମକ ଚିତ୍ର ତୋଳି ଧରିଥିଲେ। ବି.ସି. ରାୟ, New Light on Maratha Orissa, L. Roy, Bhubaneswar, Orissa.

୭୪. ବାବୁରାଓ ପାଲ୍‌ଧିକରଙ୍କ ସହ ସାକ୍ଷାତକାର।

୭୫. ଆର୍‌ଏସ୍‌ଏସ୍‌ର ପ୍ରଚାରକମାନଙ୍କ ବିଷୟରେ ଜାଣିବାକୁ ପ୍ରଳୟ କାନୁନ୍‌ଗୋ, Pracharaks of Hindu Rastra, Contemporary India, vol-1, No. 2, April-June 2002 (ପୃ ୧୭୫-୯୬) ଦ୍ରଷ୍ଟବ୍ୟ।

୭୬. ବାବୁରାଓ ପାଲ୍‌ଧିକରଙ୍କ ସହ ସାକ୍ଷାତକାର।

୭୭. Sri Guruji: Man and his Mission (On the Occasion of his 51st Birthday) (1956), Bharat Prakashan, Delhi (ପୃ ୯୧-୯୨)

୭୮. ଓଡ଼ିଶାରେ ବାବା ଏବଂ ଗୁରୁମାନଙ୍କର ନେତା, ଅମଲା ଓ ବ୍ୟବସାୟୀମାନଙ୍କ ମଧ୍ୟରେ ବେଶ୍ ପ୍ରଭାବ ରହିଛି। ପାଣ୍ଠି ସଂଗ୍ରହ କରିବାକୁ ଓ ଠିକଣା ଲୋକମାନଙ୍କ ସହ ଭବିଷ୍ୟତରେ ସଂପର୍କ ସ୍ଥାପନ କରିବାକୁ ଭୈରବାନନ୍ଦଙ୍କ ଚୟନ ଖୁବ୍ ଉପାଦେୟ ଥିଲା। ଅଧିକନ୍ତୁ, ସେ ଆର୍‌ଏସ୍‌ଏସ୍ ପ୍ରତି ସହାନୁଭୂତିଶୀଳ ଥିଲେ। ଗୁରୁମାନଙ୍କ ସହିତ ହିନ୍ଦୁ ଜାତୀୟତାବାଦର ସଂପର୍କ ବିଷୟରେ ଅଧିକ ଜାଣିବାକୁ ଲିସ୍ ମ୍ୟାକ୍‌କିନ୍, Divine Enterprise: Gurus and the Hindu National Movement, University of Chicago Press, Chicago, (1996) ଦ୍ରଷ୍ଟବ୍ୟ।

୭୯. ଅରୁଣ କୁମାର ପଣ୍ଡା, ୧୯୯୦ ଓଡ଼ିଶାରେ ବିଶ୍ୱହିନ୍ଦୁ ପରିଷଦର ଅଗ୍ରଗତିର ଇତିକଥା, Hindu Viswa (Oriya Section, Vol- 25, No. 12, August) (ପୃ- ୨୭-୩୦) ଦ୍ରଷ୍ଟବ୍ୟ।

୮୦.ହିମାଳୟ ପାଦଦେଶରେ ଥିବା ଗୋଟିଏ ଆଶ୍ରମର ଅନ୍ତେବାସୀ ଲକ୍ଷ୍ମଣାନନ୍ଦ ଗୋ-ରକ୍ଷା ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ। ତା'ପରେ ସେ ବିଶ୍ୱହିନ୍ଦୁ ପରିଷଦରେ ଯୋଗଦେଲେ ଏବଂ ଓଡ଼ିଶା ଆସିଲେ। ଆର୍‌ଏସ୍‌ଏସ୍ ନେତାମାନଙ୍କ ସହ ପରାମର୍ଶ କରି ସେ ଫୁଲବାଣୀର ଚକାପାଦରେ ନିଜ ଡେରା ପକାଇଲେ। ତାଙ୍କ କାର୍ଯ୍ୟ ବିଷୟରେ ଅଧିକ ଜାଣିବାକୁ ପ୍ରଳୟ କାନୁନ୍‌ଗୋ RSS's Tryst with Politics: From Hedgewar to Sudarshan, Manohar, New Delhi, Chapter-V ଦ୍ରଷ୍ଟବ୍ୟ।

୮୧. ଫୁଲବାଣୀ ଜିଲ୍ଲାକୁ କନ୍ଧମାଳ ଓ ବୌଦ୍ଧ ନାମକ ଦୁଇଟି ଜିଲ୍ଲାରେ ବିଭକ୍ତ କରାଯାଇଛି। କନ୍ଧମାଳ (ଫୁଲବାଣୀ) ଜିଲ୍ଲାର ଜନସଂଖ୍ୟାର ଅନୁପାତ ଏହିପରି: ଅନୁସୂଚିତ ଜନଜାତି, ୫୪.୨୩ ଭାଗ, ଅନୁସୂଚିତ ଜାତି ୧୮.୨୦ ଭାଗ ଏବଂ ସାଧାରଣ ବର୍ଗ ୨୭.୫୭ ଭାଗ। Panchayatiraj Publication (1994), Govt. of Orissa, Bhubaneswar ଦ୍ରଷ୍ଟବ୍ୟ।

୮୨. ବି. ବି. ଚାଟାର୍ଜୀ, ପି. ଏନ୍. ସିଂହ, ଜି.ଆର୍.ଏସ୍. ରାଓ (1967): Riots in Rourkela: A Psychological Study, Popular Book Services, New Delhi, ପୃଷ୍ଠା-୩୦ ଦ୍ରଷ୍ଟବ୍ୟ।

୮୩. ଓଡ଼ିଶା ସରକାର ପାଲ୍‌ଧିକରଙ୍କ ନିକଟକୁ ଗୋଟିଏ ଲିଗାଲ୍ ନୋଟିସ୍ ପଠାଇଲେ। ଉତ୍ତର ଦେବା ସତ୍ତ୍ୱେ ଚାରି ମାସ ପାଇଁ ତାଙ୍କୁ ଜେଲ୍ ଭୋଗିବାକୁ ହେଲା। ପରେ ନୀଳକଣ୍ଠଙ୍କ ସହାୟତାରେ ସେ ମୁକ୍ତି ପାଇଲେ। ବାବୁରାଓ ଦେଶପାଣ୍ଡେ ୧୧ ମାସ ଜେଲ୍ ଭୋଗିଲେ। ମୁକ୍ତି

ପରେ ଏକ ବର୍ଷ ପାଇଁ ତାଙ୍କୁ ଓଡ଼ିଶା ଭିତରକୁ ପ୍ରବେଶ ମନା ଥିଲା ।

୮୪. 'ସମାଜ', ଡିସେମ୍ବର ୫, ୧୯୬୮ (ପୃଷ୍ଠା-୨ରେ ଉଦ୍ଧୃତ)

୮୫. କିଛି କିଛି ଆଲୋଚକ ରାଉରକେଲା ହତ୍ୟା ପାଇଁ ଶିଳ୍ପ ସହରର ଅଣ-ଓଡ଼ିଆ ସଂପ୍ରଦାୟକୁ ଦାୟୀ କରନ୍ତି । କଟକରେ ଏହି ଅଣ-ଓଡ଼ିଆ ସଂପ୍ରଦାୟଗୁଡ଼ିକର ଅନୁପସ୍ଥିତି ଯୋଗୁ ଏପରି ହତ୍ୟାକାଣ୍ଡ ଘଟି ନ ଥିଲା ବୋଲି ଯୁକ୍ତି କରିବା ଦ୍ୱାରା ସେମାନେ ପରୋକ୍ଷରେ ଓଡ଼ିଆମାନଙ୍କର 'ନରମ' ଚରିତ୍ରକୁ ସ୍ୱୀକାର କରନ୍ତି ।

୮୬. ହିଂସାକାଣ୍ଡରେ ୫୯ଟି ଘର ଏବଂ ୧୦୬ଟି ଦୋକାନ ଲୁଟ୍ ହୋଇଥିଲା ଏବଂ ସେଥିରେ ନିଆଁ ଲଗାଇ ଦିଆଯାଇଥିଲା । ('ସମାଜ', ଡିସେମ୍ବର ୧୨, ୧୯୬୮)

୮୭. 'ସମାଜ', ଡିସେମ୍ବର ୧୩, ୧୯୬୮ ।

୮୮. ଏଜନ ।

୮୯. ଶ୍ରୀ ବସୁ ୧୯୧୩ ମସିହାରେ କଟକ ଜିଲ୍ଲାର ଗୋଟିଏ ବଙ୍ଗାଳୀ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଶୈଶବରେ ବିବେକାନନ୍ଦଙ୍କ ଦ୍ୱାରା ସେ ଅନୁପ୍ରାଣୀତ ହୋଇଥିଲେ । ଆଇନ ଶିକ୍ଷା ଶେଷ କଲାପରେ ସେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ସ୍ୱୟଂସେବକମାନଙ୍କର 'ଦୃଷ୍ଟାନ୍ତମୂଳକ ଶୃଙ୍ଖଳା' ବସୁଙ୍କୁ ପ୍ରଭାବିତ କରିଥିଲା । ଯେତେବେଳେ ବିବେକାନନ୍ଦ ରକ୍ ମେମୋରିଆଲ୍ କମିଟିର ଓଡ଼ିଶା ଶାଖାର ସଂପାଦକ ହେବାକୁ ପାଲ୍‌ଧିକର୍ ତାଙ୍କୁ ଭେଟିଲେ, ସେବେଠାରୁ ତାଙ୍କର ଆର୍‌ଏସ୍‌ଏସ୍ ସହ ସଂପର୍କ ହେଲା । ପାଣ୍ଠି ସଂଗ୍ରହ ଉଦ୍ୟମକୁ ବସୁ ଖୁବ୍ ଭଲଭାବେ ପରିଚାଳନା କଲେ; ଓଡ଼ିଶା ସରକାର ଏକ ଲକ୍ଷ ଟଙ୍କା ଦାନ କଲେ । କିନ୍ତୁ, ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ତାଙ୍କ ଘରେ ରହଣୀ ନିଷ୍ପତ୍ତିମୂଳକ ଥିଲା । ଗୋଲ୍‌ଓ୍ୱାଲ୍‌କର୍‌ଙ୍କ ବ୍ୟକ୍ତିତ୍ୱ, ମେଧା, ସମୟାନୁବର୍ତ୍ତିତା ତାଙ୍କୁ ଗଭୀର ଭାବେ ପ୍ରଭାବିତ କଲା । ଗୋଲ୍‌ଓ୍ୱାଲ୍‌କର୍‌ଙ୍କର ପ୍ରସ୍ତାବରେ ବର୍ଦ୍ଧମାନରେ ଅନୁଷ୍ଠିତ ଶିକ୍ଷା ଶିବିରରେ ସେ ଯୋଗ ଦେଇଥିଲେ । ପ୍ରଥମେ ସେ କଟକର ନଗର ସଂଚାଳକ, ପରେ ୧୯୬୪ରେ ପ୍ରାନ୍ତ କାର୍ଯ୍ୟବାହ ଏବଂ ଶେଷରେ ୧୯୭୦ରେ ପ୍ରାନ୍ତ ସଂଘଚାଳକ ଭାବେ ନିଯୁକ୍ତ ହେଲେ । ଖରାପ ସ୍ୱାସ୍ଥ୍ୟ ଯୋଗୁଁ ୧୯୯୯ରେ ସେ ଏହି ପଦ ତ୍ୟାଗ କରିଥିଲେ । ବସୁ ନାମକୁ ମାତ୍ର ଆର୍‌ଏସ୍‌ଏସ୍‌ର ମୁଖ୍ୟ ନ ଥିଲେ । ପାଲ୍‌ଧିକର୍‌ଙ୍କ ସହ ମିଶି ସେ ଓଡ଼ିଶାରେ ଆର୍‌ଏସ୍‌ଏସ୍‌ର ରଣକୌଶଳ ତିଆରି କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୯୦. ଜଗଦୀଶ ପଟ୍ଟନାୟକ ଥିଲେ ପ୍ରଥମ ଓଡ଼ିଆ ପ୍ରଚାରକ ।

୯୧. ଦେଓରସ୍‌ଙ୍କ କୌଶଳର ବିଶଦ ଚର୍ଚ୍ଚା ପାଇଁ ପ୍ରଳୟ କାନୁନ୍‌ଗୋଙ୍କ RSS's Tryst with Politics: From Hedgewar to Sudarshan, Manohar, New Delhi, Chapter-VI, Quest for Political Power: Balasaheb Deoras (ପୃ ୧୭୮-୨୨୩ )ଦ୍ରଷ୍ଟବ୍ୟ ।

୯୨. ବିଶ୍ୱନାଥ ପଣ୍ଡିତଙ୍କ ପିତାମହ କାଶ୍ମୀରରୁ ଓଡ଼ିଶା ଆସିଥିଲେ । ସେ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ ଏବଂ ପକ୍‌କା ସମାଜବାଦୀ । ନିରାଡ଼ମ୍ବର ଜୀବନଯାପନ କରୁଥିବା ପଣ୍ଡିତ ସାରା ଜୀବନ ଅବିବାହିତ ଥିଲେ ଏବଂ ମେହେନ୍ତର ଓ ଝାଡୁଦାରମାନଙ୍କ ଉନ୍ନତି

ପାଇଁ ଉତ୍ସର୍ଗୀକୃତ ଥିଲେ । ସେ ଥିଲେ ନୈଷ୍ଠିକ ହିନ୍ଦୁ । ସେ ଆର୍‌ଏସ୍‌ଏସ୍‌ର ରାମଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ଗାନ୍ଧୀଙ୍କ ରାମଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା, ଯାହାକୁ ସେ ଦରିଦ୍ର ଜନତାଙ୍କ ଭଗବାନ ବୋଲି କହୁଥିଲେ । ସେ ଆର୍‌ଏସ୍‌ଏସ୍‌କୁ ବିରୋଧ କରୁଥିଲେ, କାରଣ ଗାନ୍ଧୀ ହତ୍ୟା ପାଇଁ ସେମାନେ ଦାୟୀ ବୋଲି ସେ ଭାବୁଥିଲେ । ବିଶ୍ୱନାଥ ପଣ୍ଡିତଙ୍କ ସହ ସାକ୍ଷାତକାର । ■